ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଆଲାଢୀନ୍ ଓ କୁହୁକଦୀପ



ଗ୍ରନ୍ଥମନ୍ଦିର

ପ୍ରକାଶକ : ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ : ଅପ୍ରତିମା ପ୍ରିଣ୍ଟସ୍, ସୂତାହାଟ, କଟକ-୧

ସଂଶୋଧିତ ଓ ପରିବର୍ତ୍ତିତ ସଂସ୍କରଣ : ୧୯୯୬

ମୂଲ୍ୟ : ଟ. ୧୫/-

## ସୂଚୀପତ୍ର

## ଆଲାଦ୍ଦୀନ୍ ଗୁଣିଆ ହାବୁଡ଼ରେ ପଡ଼ିଲା

ଚୀନ ଗୋଟିଏ ପୁରୁଣା ଦେଶ। ଏ କଥାଟି ସେହି ଦେଶର, ପୁଣି ବହୁତ ପୁରୁଣା ଯୁଗର। ସେ ଦେଶର ଗୋଟିଏ ପୁରୁଣା ନଗର। ସେଇଠି ରହୁଥାଏ ଜଣେ ଦରଜି। ନାଁ ତା'ର ମୁସ୍ତାଫା। ବଡ଼ ଗରିବ ସେ। ଦିନରାତି ଖୁବ୍ ଖଟୁଥାଏ। ସେଥିରେ ଦୁଇପଇସା ପାଏ।

କାମକୁ ବହୁତ ଭଲପାଏ ମୁସ୍ତାଫା। କାମବେଳେ ସେ ସବୁ ଭୁଲିଯାଏ। ଘର ଲୋକେ କ'ଣ ଖାଇଲେ କି ନ ଖାଇଲେ ସେ କିଛି ବୁଝେନା। ଏମିତିକା ଲୋକଙ୍କ ପିଲାଝିଲା ଅବାଗିଆ ଧରିବେ ସେଥିରେ ସନ୍ଦେହ ନାଇଁ।

ଘରେ ତା'ର ସ୍ତ୍ରୀ। ଗୋଟିଏ ବୋଲି ପୁଅ। ତା' ନାଁ ଆଲାଦ୍ଦୀନ୍। ପିଲାଟା କିଛି ମନ୍ଦ ନ ଥିଲା। ଆଲାଦ୍ଦୀନ୍‌ର କେତେଗୁଡ଼ାଏ ଖୋଇ ଥିଲା। ସେ ଯୋଉ କଥା ଭାବେ, ତା' କରେ। ଥରେ ଠିକ୍ କରିନେଲା ତ, ଚାଲିଲା ତେଣିକି– କାହା କଥା ଶୁଣିବନି।

ମୁସ୍ତାଫା ବିଚରା କାମରେ ଧନ୍ଦିହେଉଥାଏ। ଭାବୁଥିଲା, ପୁଅ ବଡ଼ ହେଲାଣି, କିଛି ସାହାଯ୍ୟ କରିବ। ମାତ୍ର ତା' ହେଲା ନାହିଁ। ପୁଅ ଯୁଆଡ଼େ ପାରେ ସେଆଡ଼େ ଯାଏ। ଖାଇଲା ବେଳେ ଯାଇ ଆସେ। ଦିନେ ଦିନେ ତା' ବି ହୁଏନି। ସେଆଡ଼େ କୋଉଠି ଖାଇଦେଇ ରହିଯାଏ।

ପୁଅର ଏ ଢଙ୍ଗ ଦେଖି ବାପା-ମା'ର ମନରେ ଅନେକ ଚିନ୍ତା। ବାପା ପୁଅକୁ ବହୁତ ବୁଝାଏ, ଗାଳିଦିଏ... ଧମକାଏ ଏବଂ ବେଳେବେଳେ ମାଡ଼୍ ବି ଦିଏ। ହେଲେ, ପୁଅଟା ଯେମିତି

ଗୋଟେ ଅଙ୍ଗାର। କେତେ ଧୋଉଚୁ ଧୋଉଥା! ଅଙ୍ଗାରରୁ କେବେ କଳା ଛାଡ଼ିଚି ନା ଛାଡ଼ିବ? ଆଲାଦ୍ଦୀନ୍ ଯୋଉତାକୁ ସେଇତା।

ମୁସ୍ତାଫା ଦିନରାତି ଭାଳେ– କ'ଣ ହେବ ତା' ପୁଅର? କାମଦାମ ଶିଖିଲାନି। ବଞ୍ଚିବ କିପରି? ପେଟ ପୋଷିବାକୁ କିଛି ଧନ୍ଦାଟାଏ ଧରୁନି। ବଣିଚଢ଼େଇର ବି ପେଟ ଅଛି! କୁଆ କୋଇଲି କି ମଧ ଭୋକକରେ! ଆଲାଦ୍ଦୀନ୍ ଖାଇବାକୁ କୋଉଠୁ ପାଇବ? ତା' ଦିନ ଯିବ କିପରି? ଏଣେ ମୁସ୍ତାଫାର ବୟସ ଯାଉଚି। ସେ ବୁଢ଼ା ହେଉଚି, ନିବଲୁଆ ହେଉଚି। ଆଉ ଦୋକାନରେ କାମର ଭିଡ଼ ବଢୁଚି। ମୁସ୍ତାଫା ବେଳେବେଳେ କାମକୁ ଓହରିଯାଏ।



[ ଗୁଣିଆ ଓ ଆଲାଦ୍ଦୀନ ]

ଦିନେ ହଠାତ୍ ତାକୁ ଜର ହେଲା। ସେଇ ଜର ପୁଣି କାଳ ହେଲା। ସିଏ ଦୁନିଆରୁ ଖସିଲା। ଆଲାଦ୍ଦୀନ୍ ମୁଣ୍ଡ ଉପରେ ଆକାଶ ଧସିଲା। ଏବେ ଘର ଚଳାଇବା ଭାର ବୁଢ଼ୀ ମା

ଉପରେ। ବି'ଟା ପେଟ! ସେ ବିଚାରୀ ବି ଖଟିଲା। କଷ୍ଟେମଷ୍ଟେ ଯାହା ଆଣେ, ମା' ପୁଅ ଶୁଖାରୁଖା କରି ଚଳନ୍ତି। ଢୋକେ ପି... ଦଣ୍ଡେ ଜୀ... ତାଙ୍କର ଦୁନିଆଁ ଏଇଆ।

ଆଲାଦ୍ଦୀନକୁ ପନ୍ଦର ହେଲା। ତେବେ ବି ସେ ବଦଳିଲାନି। ତେବେ ବି ସିଏ ଲଗାମ୍‌ହୀନ, ବାରବୁଲା। ସେଦିନ କୁଆଡ଼େ ଜଣେ ବାଟୋଇ ସହ ତା'ର ଦେଖାହୁଏ। ଲୋକଟା ଦେଖୁ ଦେଖୁ ଆଲାଦ୍ଦୀନକୁ ଆପଣାର କରିନେଲା। ସେ କାଳେ ମୁସ୍ତାଫାର ସାନଭାଇ ଥିଲା– ତେଣୁ ସେ ଆଲାଦ୍ଦୀନର ହେଲା ଦାଦା। ଆଲାଦ୍ଦୀନର ହାତରେ ସେ କେତେଟା ପଇସା ଗୁଞ୍ଜିଦେଲା। ପିଲାର ଖୁସି ଦେଖେ କିଏ? ସିଏ ତ 'ଦାଦା' 'ଦାଦା' କହି ନାଚିଲା।

କିନ୍ତୁ ଏ ଲୋକଟା ସତରେ କ'ଣ ଆଲାଦ୍ଦୀନର ଦାଦା? ନା ମ... ସେ ପ୍ରକୃତରେ ତା'ର କେହି ନୁହେଁ। ସେ ଗୋଟେ ଗୁଣିଗାରେଡ଼ିଆ ଲୋକ। ମନ୍ତ୍ରଯନ୍ତ୍ର କରେ। ଅନେକ ଦିନ ଆଫ୍ରିକାରେ ଥିଲା। ସେଇଠୁ ଅନେକଗୁଡ଼ାଏ ଗୁଣି-ଗାରେଡ଼ି ଶିଖିଲା। ସେ ଗୋଟିଏ ପିଲାର ତଲାସରେ ଥାଏ। ଆଲାଦ୍ଦୀନକୁ ଭେଟିଲା। ଗୁଣିଆ ଜାଣିନେଲା, ଏମିତିକା ପିଲାକୁ ହାତକରିବା ବଡ଼ ସହଜ। ଏମାନଙ୍କ ଉପରେ ମୁରବି ନଥା'ନ୍ତି। ଏମାନେ ଆଗ ପଛ ଭାବନ୍ତିନି... ହୋଦସ୍ତ ଡେଇଁପଡ଼ିବେ– ଭାବିବେନି, ନିଆଁ କି ପାଣି ଅଛି। ଡେଇଁଲେ ତ ଡେଇଁଲେ। ଗୁଣିଆ ତା' ଚାଲାକି ବାହାରକଲା। ଜାଲ ବିଛେଇଲା। ଚଢ଼େଇ ଧରାଦେଲା ଖୁବ୍ ସହଜରେ।

ତା'ଆରଦିନ ସେ ଲୋକ ପୁଣି ଆସିଲା। ସାଥିରେ ମିଠାଇ, ଭଲ ଭଲ ଫଳମୂଳ, ଆଉରି କେତେ କ'ଣ ଆଣିଥାଏ। ସେ ଆଲାଦ୍ଦୀନର ଘରକୁ ଗଲା। ତା' ମା' ଆଗରେ ଅନେକ କଥା କହିଲା। ମୁସ୍ତାଫାର ଗୁଣ ବାହୁନି ମିଛିମିଛିକା କାନ୍ଦିଲା। ତା'

ମା'ର ବିଶ୍ୱାସ ହୋଇଗଲା । ଗୁଣିଆକୁ କହିଲା, "ଆଲାଦ୍ଦୀନ ସୁନାପିଲାଟେ ମ ନୂଆ'ଉ । ମୁଁ ତାକୁ ମଣିଷ କରିଦେବି । ସେ ମୋ ଭାଇର ନାମ ରଖିବ । ତମେ ମତେ ମନେ ପକାଉଥିବ ।" ସେ ଆଲାଦ୍ଦୀନକୁ ଅନେକ ଦାମୀ ଲୁଗାପଟା ଦେଲା ।

ପ୍ରଥମେ ଆଲାଦ୍ଦୀନର ମା' ଦୋଦୋପାଞ୍ଚ ହେଉଥିଲା । ଲୋକଟାକୁ କିଛି କହୁନଥିଲା । ଉପର ରଙ୍ଗ ଦେଖି, ବାହାର ଢଙ୍ଗ ଦେଖି, କାହାକୁ ଚିହ୍ନି ହେବନି । ବେଶ ବଦଳାଇ ସଇତାନ ମଧ ସାଧୁ ବୋଲାଏ । କିଏ ଜାଣେ ଲୋକଟା ମନରେ କ'ଣ ଅଛି ? ହେଲେ ଦିନକୁ ଦିନ ଲୋକଟା ଧାଡ଼ି ଲମ୍ବାଇଲା, ମାୟା ଲଗାଇଲା । ତେଣୁ ବୁଢ଼ୀର ସନ୍ଦେହ କଟିଗଲା । ତା' ଉପରେ ସେ ଦେଉଛି ଲୁଗାପଟା, ମିଠା । ସେ ଭାବିଲା – ଲୋକଟା ମୁସ୍ତାଫାର ଭାଇ ହୋଇଥିବ – ନ ହେଲେ ପର ପାଇଁ ଏତେ ପଇସାପତ୍ର କିଏ କିଆଁ ଢାଳିବ ?

ଏମିତି କରି କରି ଦିନକୁ ଦିନ ସେ ଜମାଇନେଲା । ଆଲାଦ୍ଦୀନକୁ ବଜାର ବୁଲାଏ । ହାଟକୁ ନିଏ । ଆଉ କେବେ ଆଉ କେଉଁଠିକି ନିଏ । କେତେ ମନଲୋଭା ଜିନିଷ କିଣିଦିଏ । ଥରେ ସେ ରଜାଘର ବଗିଚା ବୁଲିବାକୁ ଆଲାଦ୍ଦୀନକୁ ଡାକିଲା । ତା' ମା' ତ ମୁହଁଦେଇଥାଏ । ଆଲାଦ୍ଦୀନ ମନା କରିପାରିଲା ନାହିଁ । ଦିହେଁ ଘର ଛାଡ଼ି ବଗିଚା ଆଡ଼କୁ ଚାଲିଲେ ।

ସେମାନେ କଥାଭାଷା ହୋଇ ଚାଲିଥାନ୍ତି । ସହରର ଜନଗହଳି ପଛରେ ପଡ଼ିଗଲା । ଅଳ୍ପ ଦୂରରେ କୋଠାଟାଏ । ସେଠାର ବଡ଼ ବଗିଚା ଦୂରକୁ ଦିଶୁଥାଏ । ସେମାନେ ବଗିଚା ବୁଲିଲେ । ବଗିଚାକୁ ଲାଗି ସେ ପାଖେ ଜଙ୍ଗଲ । ପାଖରେ ଝରଣାଟାଏ । ସେମାନେ ସେଠାରେ କିଛି ସମୟ ବସିଲେ । ଗୁଣିଆ କହିଲା, "ପୁଅ, ଭୋକ ଲାଗୁଛି କି ? ନେ, ଏ ଫଳଗୁଡ଼ିକ ଖା । ବାଟ ଚାଲି ଚାଲି କଷ୍ଟ ଲାଗୁଥିବ । କିଛି ଚିନ୍ତା ନାହିଁ । ଟିକେ ଆରାମ କର ।

ତା'ପରେ ଆମେ ଏଇ ଜଙ୍ଗଲଟା ଟିକେ ବୁଲିନେବା। ଏଠି ଅନେକ ବଢ଼ିଆ ଜିନିଷ ଅଛି। ଇଏ କିଛି ଇମିତିସିମିତି ବଣ ନୁହେଁରେ – ଥରେ ଦେଖିଲେ ତୋର ପେଟ ପୂରିଯିବ।''

ଖାଇପିଇ ଆଲାଦ୍ଦୀନ ତାଜା ହେଲା। ଗୁଣିଆ ସାଙ୍ଗେ ସେ ଚାଲିଲା। ଏଣେ ବଣଟା ବଢ଼ି ବଢ଼ି ଚାଲିଥାଏ। କେତେ ଚାଲିଲେ ବି ଶେଷ ହେଉନି। ଦେଖୁ ଦେଖୁ ଗୋଟେ ପାହାଡ଼ ମଝିରେ ସେ ଦୁହେଁ ଯାଇ ପହଞ୍ଚିଗଲେ।

ଏତେବେଳକୁ ଆଲାଦ୍ଦୀନର ମନ ଘର ଧରିଲାଣି। ସେ ଡରୁଛି। କହିଲା, ''ଦାଦା, କୁଆଡ଼େ ନେଉଚ? ମୁଁ ତ କିଛି ବୁଝିପାରୁନି। ରଜାଘର ବଗିଚା, ଆଉ ଆମ ସହର ଯେ ଅନେକ ଦୂରରେ ରହିଲାଣି। ଆମେ କ'ଣ ଆଜି ଘରକୁ ଫେରିପାରିବା? ମୁଁ ତ ବାଟ ମନେରଖିପାରୁନି। ହୁଏତ ବାଟ ବଣା ହୋଇଯିବା।''

ଗୁଣିଆ ମିଛ ବୋଧ ଦେଇ କହିଲା, ''ଡରେନା ବାବୁରେ, ମୁଁ ତୋତେ ଗୋଟେ ନୂଆ ବଗିଚାକୁ ନେଇଯିବି। ରଜାଘର ବଗିଚା ଏ ବଗିଚାର କୋଉ ଗୁଣକୁ ସରିହେବନି। ଏପରି ବଗିଚା ଏ ଦେଶରେ କିଆଁ ସାରା ଦୁନିଆରେ ବି କୋଉଠି ନ ଥିବ।''

ଅନେକ କଥା ସେ କହୁଥାଏ। କାହାଣୀ ଶୁଣାଉଥାଏ। ପିଲାଟାର ମନ ନେବାକୁହେବ। ତାକୁ ହାଲିଆ ଲାଗୁଥିବ। ସେ କଥା ଶୁଣି ବାଟଚାଲିର କଷ୍ଟ ଭୁଲିଯାଉ। ଏଣେ ସେମାନେ ପାଦେ ପାଦେ କରି ଆଗକୁ ଆଗକୁ ଚାଲିଥାନ୍ତି। ଦେଖୁ ଦେଖୁ ସେମାନେ ଦୁଇ ପାହାଡ଼ର ଠିକ୍ ମଝିରେ ଆସି ପହଞ୍ଚିଲେ। ସେଠି ଗୋଟେ ସୁଡ଼ଙ୍ଗ। ବଡ଼ ଅଣଓସାରିଆ। ପ୍ରକୃତରେ ଏଇ ଜାଗାକୁ ଆଲାଦ୍ଦୀନକୁ ଆଣିବାକୁ ଗୁଣିଆ ଅନେକ ଦିନରୁ ପାଞ୍ଚ କରୁଥାଏ। ଆଜି ସେ ସୁଯୋଗ ମିଳିଲା।

ସେଠାରେ ପହଞ୍ଚି ଗୁଣିଆ ଖୁବ୍ ଖୁସି ହୋଇଗଲା। ସେ ପାଟିକରି କହିଲା, ''ଆଉ ଆଗକୁ ଯିବାକୁ ହେବନିରେ ବାପ!

ଏଇଲାଗେ ତୋତେ ମୁଁ ଏକ ଚମତ୍କାର ଖେଳ ଦେଖାଉଚି। ଗଲୁ, କାଠିରାଞ୍ଜି କିଛି ଆଣିବୁ। ଟିକିଏ ନିଆଁ କରିବା।''

ଆଲାଦ୍ଦୀନର ମନରେ ଟିକେ ଆଗ୍ରହ ଆସିଲା। ସେ ସଙ୍ଗେ ସଙ୍ଗେ କାଠିରାଞ୍ଜି ଗୋଟେଇ ଆଣିଲା। ଗୁଣିଆ ସେଥିରେ ନିଆଁ ଜାଳିଲା। ଶିଖା ତେଜି ଉଠିଲା। ଗୁଣିଆ ସେ ନିଆଁରେ କି ଜିନିଷଟେ ପକାଇଦେଲା ଯେ ଚାରିଆଡ଼ ଧୂଆଁରେ ଛାଇଗଲା। ହଠାତ୍ ସବୁଆଡ଼ ଧୂମାଳ ଦିଶିଲା। ତା' ସଙ୍ଗେ ସଙ୍ଗେ ଗୁଣିଆ ମନ୍ତ୍ର କରି ଚାଲିଥାଏ। ଏ ସମୟରେ ମାଟି ଥରି ଉଠିଲା। ଘଡ଼ଘଡ଼ି କରି ଏକ ଶବ୍ଦ କରି ମାଟି ଫାଟିଗଲା। ଯୋଉଠି ମାଟି ଫାଟିଲା, ସେଇଠି ଦେଖାଗଲା ବଡ଼ ପଥରଟେ। ପଥର ଉପରେ ପିତଳର ଗୋଟେ ବଡ଼ କଡ଼ା।

ଏସବୁ ଦେଖି ଭୟରେ ଆଲାଦ୍ଦୀନର ବୁଦ୍ଧି ବଣା ହୋଇଗଲା। ସେ ଡରି ଛାନିଆ। ପଳାଇଯିବାକୁ ବାଟ ଖୋଜୁଛି– କିନ୍ତୁ ଆଉ ଯାଉଛି କୁଆଡ଼େ? ଗୁଣିଆ ତା' ଉପରେ ମନ୍ତ୍ର ଚଳାଇଲା। ତାକୁ କହିଲା, ''ଆରେ ବୋକା, ପଳାଉଚୁ କାହିଁକି? ଏଇ ପଥର ତଳେ ଅନେକ ସୁନା, ରୁପା, ହୀରା, ନୀଳା ଅଛି। ସେଥିରୁ ଅଳ୍ପମାତ୍ର ପାଇଲେ, ଯେକୌଣସି ବାଦଶାହାକୁ ତୁ ବଳିଯିବୁ ରେ ବୋକା! ତୋତେ କିନ୍ତୁ ଗୋଟିଏ କଥା କରିବାକୁ ହେବ। ଏ ପଥରଟାକୁ ଘୁଞ୍ଚାଇବାକୁ ହେବ। ତେଣିକି ଅଛି ଏକ ସୁଡ଼ଙ୍ଗ। ସେ ସୁଡ଼ଙ୍ଗରେ ତୁ ଏକା ଯିବୁ। କଥା ହେଲା, ମୁଁ ତୋତେ ଯାହା କହିବି ତୁ ଠିକ୍ ସେଇୟା କରିବୁ।''

## ଆଲାଦ୍ଦୀନ୍ ମାଟିତଳ ସୁଡ଼ଙ୍ଗ ଭିତରେ ବନ୍ଦୀ ହେଲା

''ହେଲା ଦାଦା, କୁହ! କ'ଣ କରିବି କୁହ!'' ଆଲାଦ୍ଦୀନ ବିଚରାର ମନରେ ଗୋଟାଏ ନୂଆ ଆଶା ମୁଣ୍ଡ ଟେକିଲା। ଏତେ

କଷ୍ଟ ତ ସହିଲାଣି – ଯଦି ସୁନାରୂପା ଗୁଡ଼ାଏ ମିଳିବ, ଆଉ ଟିକିଏ ଚେଷ୍ଟା କରିବନି ଅବା କାହିଁକି ?

"ଆଗେ ତୋ' ବାପା ଜେଜେଙ୍କ ନାଁ ନେ, ଆଉ ତା'ପରେ ଏ କଡ଼ା ଭିଡ଼ିଦେ। ପଥର ଆପେ ଆପେ ଉଠିଆସିବ।" – ଗୁଣିଆ ବତାଇଲା।

ପଥରଟା ଦେଖିବାକୁ ଖୁବ୍ ବଡ଼। ଆଲାଦ୍ଦୀନ ବାପା ଜେଜେଙ୍କର ନାଁ ନେଲା। କଡ଼ାଟିକୁ ଭିଡ଼ିଲା। ସତକୁ ସତ ପଥରଟା ବେଶ୍ ସହଜରେ ଉଠିଆସିଲା। ସେ ପଥରଟାକୁ ଗୋଟେ ପାଖକୁ ରଖିଦେଲା। ଦେଖିଲା, ମାଟିତଳେ ସୁଡ଼ଙ୍ଗଟାଏ। ପାହାଚ ପରେ ପାହାଚ ତଳକୁ ଲମ୍ବିଯାଇଚି।

ସୁଡ଼ଙ୍ଗ ଦେଖି ଆଲାଦ୍ଦୀନ ଛାନିଆ ହେଲା। ଗୁଣିଆ କହିଲା, "ଓହ୍ଲାଇ ଯା' ବେଟା! ଏ ପାହାଚ ଯୋଉଠି ଶେଷ ହେଇଚି ସେଠି ଗୋଟେ ବଡ଼ ଘର ଅଛି। ଘରଟା ତିନଭାଗ ହେଇଚି। ସବୁ କୋଠରିରେ ପିତ୍ତଳର ବଡ଼ ବଡ଼ ହଣ୍ଡାମାନ ରହିଚି। ସବୁଥରେ ସୁନା ରୁପା ଭରିରହିଚି। ହେଲେ ସେଗୁଡ଼ା ଛୁଇଁବୁନି। ମନେରଖେ – ପ୍ରଥମ କୋଠରିରେ ପହଞ୍ଚି ତୁ କୁର୍ତ୍ତାଟାକୁ ଅଣ୍ଟାରେ ଗୁଡ଼ାଇଦେବୁ। ଦ୍ୱିତୀୟ କୋଠରୀ ଟପି ତୃତୀୟ କୋଠରିକୁ ଯିବୁ। ମନେରଖିବୁ – କୌଣସି କାଛକୁ ଛୁଇଁବୁନି। ଛୁଇଁଲେ ଆଉ ରକ୍ଷାରକ୍ଷଣ ନାଇଁ – ମରିବା ସାର। ତୃତୀୟ କୋଠରିରେ ଦେଖିବୁ ଗୋଟାଏ ଦୁଆର। ସେ ଦୁଆର ସେ ପାଖେ ଗୋଟେ ବଗିଚା ଅଛି। କୋଠରିରେ ନରହି ତୁ ସିଧା ଯିବୁ ସେ ବଗିଚାକୁ। ବଗିଚା ଶେଷରେ ଦେଖିବୁ ଗୋଟେ କାଛ। କାଛର ପେଟରେ ଫାନ୍ଦଟାଏ। ସେଠି ଜଳୁଛି ଦୀପଟାଏ। ଦୀପଟାକୁ ଉଠାଇ ଆଣି ଲିଭାଇଦେବୁ। ଦୀପର ତେଲ, ବଳିତା ସେଇଠି ଫିଙ୍ଗିଦେବୁ। ଦୀପଟାକୁ ଅଣ୍ଟାରେ ଗୁଞ୍ଜି ଯେମିତି ଯାଇଥିଲୁ ସିମିତି ଫେରି ଆସିବୁ। ଆଉ ଏହା ପରେ ବଗିଚାର ଯେ କୌଣସି ଫଳଫୁଲୁରି ଚାହିଁଲେ ତୁ ମଜାରେ ଆଣିପାରିବୁ।"

ଏତକ ବୁଝାଇଲା ଗୁଣିଆ। ତା'ପରେ ନିଜ ହାତରୁ ମୁଦିଟାଏ କାଢ଼ିଲା। ସେଇଟାକୁ ଆଲାଦ୍ଦୀନର ଅଙ୍ଗୁଳିରେ ପିନ୍ଧାଇଦେଲା। କହିଲା, "ମୁଦିଟା ପାଖରେ ଥିଲେ ତୋ'ର ଆପଦ-ବିପଦ ପାଇଁ ଡର ରହିବନି। ଆଉ ଯିମିତି ବତାଇଚି ସେମିତି କରିବୁ ତ, ତୋ' ଦିହର ଧୂଳି ପଡ଼ିବନି।" ତା'ପରେ ସିଏ ଆଲାଦ୍ଦୀନର କାନ୍ଧରେ ହାତ ରଖିଲା। କହିଲା– "ଯା... ପୁଅ, ତଳକୁ ଉତୁରି ଯାଆ। ଭାବିବାର କିଛି ନାହିଁ। ଡରିବାର କିଛି ନାହିଁ। ମୁଁ ତୋ ଦାଦା ପରା! ତୋର ଅହିତ କେବେ କରିବିନି। ଏହା ପରେ, ଦାଦା ପୁତୁରା ଆମେ ଅମିର ହେଇଯିବାରେ... ଅମିର !!"



[ ଆଲାଦ୍ଦୀନ କୁହୁକ ଦୀପ ପାଖରେ ଯାଇ ପହଞ୍ଚିଲା। ]

ଆଲାଦ୍ଦୀନ ପ୍ରଥମେ ଆଗପଛ ହେଲା। କିନ୍ତୁ କ'ଣ ଭାବି ସେ ତଳକୁ ଓହ୍ଲାଇଗଲା। ସେ ଗୁଣିଆର କଥା ଅକ୍ଷରେ ଅକ୍ଷରେ ପାଳିଲା। ଗୁଣିଆ କହିଥିବା କୋଠରିଗୁଡ଼ିକ ଓ ବଗିଚା ଆଦି

ପାରିହୋଇ ସେ କୁହୁକ ଦୀପ ପାଖରେ ଯାଇ ପହଞ୍ଚିଗଲା ।

ସେ ଦୀପଟିକୁ ଟେକି ଧଇଲା । ଜଳନ୍ତା ଦୀପଟାକୁ ଫୁଙ୍କି ଲିଭାଇଦେଲା । ତେଲ ଆଉ ସଳିତାକୁ ଫିଙ୍ଗିଦେଲା । ଦୀପଟାକୁ ଅଣ୍ଟାରେ ଖୋସିଲା । ବଗିଚାରେ ଅନେକ ଫୁଲଗଛ । ସେଥିରେ ଅଗଣିତ ରଙ୍ଗିନ୍ ଫୁଲ । ସେସବୁ ଝଲସୁଥାଆନ୍ତି । ସେଗୁଡ଼ିକ ଦେଖି ତା' ମନ ଆନନ୍ଦରେ ଘର ଧରୁନଥାଏ । ସେ ଗଛରେ ଯୋଉ ରଙ୍ଗବେରଙ୍ଗ ଫଳ ଫୁଲ ଥିଲା, ସେସବୁ ପ୍ରକୃତ ଫଳଫୁଲ ନ ଥିଲା – ସେ ଗୁଡ଼ିକ ହୀରା, ମୋତି ଆଦି ନାନା ରତ୍ନର ଜିନିଷ – ସେଇପରି ଫଳଫୁଲ ପରି ଦିଶୁଥାଏ । ସେଗୁଡ଼ାକ କ'ଣ ଭାବି ଆଲାଦ୍ଦୀନ ଛିଣ୍ଡାଇଲା । ହାତକୁ ଟାଣ ଟାଣ ଲାଗୁଚି । କାମୁଡ଼ିଲେ ଦାନ୍ତ ପଶୁନି । ଶୁଙ୍ଘିଲେ ବାସନା ନାଇଁ । ସେସବୁରୁ ଗୁଡ଼ାଏ ଛିଣ୍ଡାଇଲା । ପକେଟ୍‌ରେ ଭରିଲା । ତା' କୁର୍ତ୍ତାରେ ଗୁଡ଼ାଏ ବାନ୍ଧିଲା । ଏତେ ମଣି ମାଣିକ ଧରିଥାଏ ଯେ, ତାକୁ ବୋହିପାରୁନଥାଏ । ଚାଲିବାକୁ ବହୁତ କଷ୍ଟ ହେଉଥାଏ । କୌଣସିମତେ ସେସବୁ ଧରି ଗୁହା ମୁହଁକୁ ଫେରିଲା ।

ସୁଡ଼ଙ୍ଗ ମୁହଁରେ ତା'ର ଦାଦା ବୋଲାଉଥିବା ସେଇ ବୁଢ଼ା ଗୁଣିଆ ଚାହିଁ ବସିଚି । ଆଲାଦ୍ଦୀନକୁ ତଳେ ଦେଖୁ ଦେଖୁ ସେ ଉପରୁ ପାଟିକଲା, "ଦେଲୁ ଦେଲୁ, ସେ ଦୀପଟା ଦେଲୁ ! ସେ ଦୀପଟା ମୋତେ ଦେ ।" ଦୀପଟାକୁ ହାତ୍‌ପଇଠ କରିବାକୁ ତା'ର ଆଉ ତର ସହୁନି ।

ଆଲାଦ୍ଦୀନ ତ ବୋଝ ବୋହିଚି । ଅଣ୍ଟାରେ ସେ ଗୁଡ଼ାଇଥାଏ ଦୀପଟାକୁ । ହାତ ବଦଳାଇଲେ ସିନା ଅଣ୍ଟାରୁ ଦୀପ କାଢ଼ିବ ? ସେ ସଁ ସଁ ହେଉଥାଏ, ଅନ୍ଦି ଧନ୍ଦି ହେଉଥାଏ । ସେ କହିଲା, "ରୁହ ଦାଦା, ମୁଁ ଟିକେ ଉପରକୁ ଯାଏ !"

ଏତିକିରେ ଗୁଣିଆର ରାଗ ଦେଖ । ସେ ସଙ୍ଗେ ସଙ୍ଗେ ତା' ମନ୍ତ୍ର ପଢ଼ିଲା । ସେଆଡୁ ଏତେବଡ଼ ପଥରଟା ସିମିଳି ତୁଲା

ପରି ଉଠିଆସିଲା ଓ ସୁଡ଼ଙ୍ଗର ମୁହଁକୁ ବନ୍ଦକରିଦେଲା । ଆଲାଦ୍ଦୀନ ପାଟି କରୁ କରୁ... ହାଁ ହାଁ କହୁ କହୁ ବାଟ ବନ୍ଦହେଇଗଲା । ତା' କର୍ମ ଇମିତି । ସେ କର୍ମକୁ ଆଦରି ରହିଲା ।

ଗୁଣିଆ ଭାବିଲା, ବାଟ ତ ବନ୍ଦ ହୋଇଗଲା, ତା' ଭିତରେ ରହି ସେ ପିଲାଟା ମରିବ । କୁହୁକ ଦୀପ ଯେମିତି ଦୂରରେ ଥିଲା ସେମିତି ରହିଗଲା । ସେ ନିରାଶ ହୋଇଗଲା । ଆଲାଦ୍ଦୀନର ସାତପୁରୁଷର ଶ୍ରାଦ୍ଧ ବାଡ଼ି ବାଡ଼ି ସେ ଆଫ୍ରିକାକୁ ଫେରିଗଲା ।

ଏଣେ ବିଚ୍‌ରା ଆଲାଦ୍ଦୀନର ଅବସ୍ଥା କହିଲେ ନସରେ । ତା' ପାଇଁ ସବୁ ଦିଗ ବନ୍ଦ । ଖାଲି ଅନ୍ଧକାର ତାକୁ ଘେରିଚି । ସେ କୁଆଡ଼େ ଯିବ ? ଖାଇବାକୁ ନାଇଁ । ଭୋକରେ କରଡ଼ି ଜଳୁଚି । କାନ୍ଧ ପିଠି ଭାର ବୋହି ଦରଜରେ ଫାଟୁଚି । ଆଖିରୁ ଲୁହ ଝରୁଚି । ବୁଲା ଚଢ଼େଇପରି ସିଏ ବୁଲୁଥିଲା କେଡ଼େ ଖୁସିରେ ! ଏବେ ହଠାତ୍ ବନ୍ଦୀ ହୋଇଗଲା ।

ଦିନେ ଗଲା, ଦି'ଦିନ ଗଲା । କଷ୍ଟର ସୀମା ନାହିଁ । ଶେଷକୁ ଜାଣିଲା, ସେଇଠି ସେ ମରିବ । ତା'ରଂ ଆଉ କୌଣସି ଆଶା ରହିଲାନି । ତା' ମା', ସାହିପଡ଼ିଶା ଘର– ସବୁ କୁଆଡ଼େ ରହିଲେ କେହି ତା'ର ଖବର ଜାଣିପାରିବେନି । ଏଇ ପଥର ତଳେ ରହି ସେ ଭୋକ ଶୋଷରେ ମରିଯିବ ।

ମରିବା ଆଗରୁ ଟିକେ ଭଗବାନ୍‌ଙ୍କୁ ଡାକିବାକୁ ତା'ର ମନ ହେଲା । ଆଗରୁ କେବେ ସେ ପ୍ରଭୁଙ୍କୁ ଡାକି ନଥିଲା । ଆଜି ବିପଦ ତା' ନାକରେ ଦଉଡ଼ି ଲଗାଇଚି, ତାକୁ ଏ ଦିଗରୁ ସେ ଦିଗରୁ ଟାଣୁଚି । ତା'ର ସାହାଭରସା କେହି ନାଇଁ । ସିଏ ତେଣୁ ଭଗବାନ୍‌ଙ୍କୁ ଡାକୁଚି... "ରକ୍ଷାକର... ରକ୍ଷାକର..." । ସିଏ ଭଗବାନ୍‌ଙ୍କ କରୁଣା ମାଗୁଚି । ହାତ ଯୋଡୁଚି । ହାତ ଯୋଡ଼ି ପାପୁଲି ଘଷି ଘଷି ଗୁହାରି କରୁଚି । ଏମିତି ଘଷୁ ଘଷୁ ଗୁଣିଆ ଯୋଉ ମୁଦିଟା ଦେଇଥିଲା ସେଇଟା ବି ଘଷିହେଲା । ସଙ୍ଗେ

ସଙ୍ଗେ କୁଆଡୁ ଗୋଟେ ଅସୁର ଆସି ଦେଖାଦେଲା। ସେ ଆସି ପହିଲେ ଆଲାଦ୍ଦୀନକୁ ସଲାମ୍ କଲା। କହିଲା, ''ହେ ମାଲିକ୍, ମୁଁ ଏ ମୁଦିର ଚାକର। ମୋପରି ଆହୁରି କେତେକ ଚାକର ବି ଅଛନ୍ତି। ଆପଣ ଯାହା କହିବେ ମୁଁ ତାହା କରିବି।''

ମରଣ ଚିନ୍ତାରେ ଆଲାଦ୍ଦୀନ ପ୍ରାୟ ଜୀବନଶୂନ୍ୟ ହୋଇଯାଇଥାଏ। ସେଥିରେ ସେ ଅସୁରକୁ ଦେଖି ଆହୁରି ଡରିଗଲା। ସେ ଏତେ ଛାନିଆ ହୋଇ ଯାଇଥିଲା ଯେ, କେତେ ସମୟ ପାଇଁ ତା' ପାଟି ଫିଟିଲାନି। ସେ କିନ୍ତୁ ଧୀରେ ଧୀରେ ଘଟଣାଟା ବୁଝିଗଲା। ହାତ ଯୋଡ଼ି ଠିଆହୋଇଥିବା ଅସୁରକୁ ସେ ଖନେଇ ଖନେଇ କହିଲା, ''ପ୍ରଥମେ ଏ ସୁଡ଼ଙ୍ଗରୁ ମୋତେ ବାହାରକର !''

ଆଲାଦ୍ଦୀନ ଏତିକି କହିବାରୁ ଆଖିପିଛୁଳାକେ ସେ ଅସୁର ତାକୁ ବାହାରକୁ ନେଇଆସିଲା। ସେଇଠୁ ଆଲାଦ୍ଦୀନ ପଡ଼ିଉଠି ସିଧା ସିଧା ତା' ଘରକୁ ଗଲା। ତା' ମା' ତାକୁ ଚାହିଁରହିଥିଲା। ଏତେ ଦିନଯାଏ ପୁଅ କେଉଁଠିକି ଗଲା, କ'ଣ କରୁଚି– ଚିନ୍ତାରେ ବୁଢ଼ୀ କାନ୍ଦି କାନ୍ଦି ବାଇଆଣୀ ପରି ହୋଇଯାଇଥିଲା। ଏବେ ପୁଅକୁ ଦେଖି କୁଣ୍ଡାଇପକାଇଲା। ଆଲାଦ୍ଦୀନ ତା'ର କଥା କହିଲା। ବୁଢ଼ୀ ପୁଅକୁ କୋଳେଇ କେତେ ବାହୁନିଲା; ପରେ ଲୁହ ପୋଛି ଯତ୍ନରେ ରତ୍ନତକ ଲୁଚାଇରଖିଲା।

## ଆଲାଦ୍ଦୀନ କୁହୁକ ଦୀପର ଗୁଣ ଜାଣିଲା

ଏତେ ଦିନର କଷ୍ଟଯୋଗୁଁ ଆଲାଦ୍ଦୀନ ସେଦିନ ଘରେ ଆରାମରେ ଶୋଇଗଲା। ଉଠିଲା ଅନେକ ସମୟ ପରେ। ଉଠିବା ସଙ୍ଗେ ସଙ୍ଗେ ତାକୁ ବଡ଼ ଭୋକହେଲା। ମା'କୁ ଖାଇବାକୁ ମାଗିଲା। ହେଲେ, ମା' କ'ଣ ଦେବ ? ଘରେ ଅଛି ବା କ'ଣ ? ଯାହା ଥିଲା ପୁଅକୁ ରାନ୍ଧି ଦେଇଥିଲା, ଆଉ ତା' ପାଖେ

କିଛି ନାହିଁ। ବୁଢ଼ୀ କହିଲା – "ହଉ, ଟିକିଏ ବେଳ ଅପେକ୍ଷାକରେ। କିଛି ସୂତା କାଟିଚି। ଆଉ କିଛି ସୂତା କାଟି ବଜାରରେ ବିକି ଖାଇବା ଜିନିଷ କିଣିଆଣିବା।"

ଆଲାଦ୍ଦୀନ କହିଲା, "ଥାଉ ମା', ତୋ ସୂତାକଟା ଥାଉ। ମୁଁ ତ ସେଇ ସୁଡ଼ଙ୍ଗରୁ ଗୋଟାଏ ଦୀପ ଆଣିଛି। ସେଇଟାକୁ ବିକିଦେଲେ ଆଜି ଦିନର ଖର୍ଚ୍ଚଟା ଉଠିଯିବ। ଯା... ସେଇଟାକୁ ନେଇ ବିକିଦେ।"

ମା ଦୀପଟାକୁ ଆଣିଲା। ବଡ଼ ମଇଳା କୋଚ଼ଟିଆ ଦିଶୁଚି। ଭାବିଲା ମାଜିମୁଜି ସଫା କରିଦେବା ଉଚିତ, ତାହାହେଲେ ଲୋକେ ଖୁସିରେ ଅଧିକ ଦାମ୍‌ରେ କିଣିବେ। ନହେଲେ ଏ ଅସନା ଦୀପଟାକୁ ଛୁଇଁବ କିଏ? ବୁଢ଼ୀ ତାକୁ ମାଜିବସିଲା। ସେ ଧୂଳି ମେଞ୍ଚାଏ ଧରି ଦୀପଟିକୁ ରଗଡ଼ିଦେଇଛି... ୟୋ... ହୋ... ହୋ... ରଡ଼ି ଛାଡ଼ି ନିର୍ଘାତିଆ ଅସୁରଟାଏ ବାହାରିଆସିଲା। ସେ ଜିଲିକିଲା ଗର୍ଜନ କରି କହିଲା, "କହ, କହ ମୋର ମାଲିକ, ମୁଁ ତୁମ ପାଇଁ କ'ଣ କରିବି? ମୋ'ପରି ଆହୁରି ଅନେକ ଅଛନ୍ତି ଏଇ ଦୀପର ଚାକର।"

ବୁଢ଼ୀତ ଅସୁରକୁ ଦେଖି ଛାନିଆଁ। ଡରରେ ସେ ବେହୋସ୍ ହେଇଗଲା। ହେଲେ ଆଲାଦ୍ଦୀନ ଏ ପ୍ରକାର ଘଟଣା ସହ ଆଗରୁ ପରିଚିତ ଥିଲା। ସେ ସାହସର ସହ କାମ କଲା। ନିଜ ହାତରେ ଦୀପଟାକୁ ଉଠାଇନେଲା। ଅସୁରକୁ ଚାହିଁ କହିଲା, "ମୋ ଲାଗି କିଛି ଖାନା ଆଣ। ମୋତେ ବଡ଼ ଭୋକହେଉଛି।"

ଦୈତ୍ୟ ଏକଥା ଶୁଣି କୁଆଡ଼େ ଉଭାନ୍ ହେଇଗଲା। ତା'ପରେ ମସ୍ତବଡ଼ ଏକ ରୁପା ଥାଳିରେ ବହୁ ପ୍ରକାରର ଖାଇବା ଜିନିଷ ଆଣି ହାଜର ହୋଇଗଲା। ମା ପୁଅ ଦିହେଁ ମିଶି ସେତକ ଖାଇଲେ। ଖାନା ଖୁବ୍ ସୁଆଦିଆ ଥିଲା। ଏ ପ୍ରକାର ଖାଇବା ଜିନିଷ ସେମାନେ ଜୀବନରେ ଦେଖିନଥିଲେ। ତା'ଛଡ଼ା ସେମାନେ

ଅନେକଗୁଡ଼ିଏ ରୁପାଥାଳି ପାଇଲେ।

ସେଇଦିନୁ ଯେତେବେଳେ ସେମାନଙ୍କର ଖାଇବା ଅଭାବ ପଡ଼େ, ସେମାନେ ଏଇ ରୁପାଥାଳିଆରୁ ପଟେ ଖଣ୍ଡେ ବିକି ଦିଅନ୍ତି। ସେଇ ପଇସାରେ ମଉଜରେ ଚଳନ୍ତି। ଏଇପରି କିଛି ଦିନ ଚଳିଗଲା। ଆଲାଦ୍ଦୀନ କୋଉ କାମରେ ନୁହେଁ। ଫୁଲଫାଙ୍କିଆ ଆଉ ଫୂର୍ତ୍ତିବାଜ। ଲୋକେ କହନ୍ତି, ବସି ଖାଇଲେ ନଈବାଲି ସରେ।



ଅଭାବ ହେବାରୁ ଆଲାଦ୍ଦୀନ ପୁଣି ସେଇ ଦୀପକୁ ଘଷିଲା। ସଙ୍ଗେ ସଙ୍ଗେ ଅସୁର ହାଜର ହେଲା। ସେ ତାକୁ ଖାନା ଆଣିବାକୁ କହିଲା। ସେ ଅସୁର ପୁଣି ଆଗ ପରି ରୁପାର ଥାଳିରେ ନାନା ପ୍ରକାର ଖାନା ଆଣିଦେଲା। ଅନେକ ଦିନ ଏଇପରି କଟିଗଲା। ବାସନକୁସନ ବିକାବିକି ପାଇଁ ଆଲାଦ୍ଦୀନ ବରାବର ବଜାରକୁ ଯାଉଥାଏ। ସେଠି ବେପାରୀମାନଙ୍କ ସହ ମିଶୁଥାଏ। ଦାମୀ ଦାମୀ କପଡ଼ାଲତାର କାରବାର, ସୁନା ରୁପା ହୀରାର ବେପାର ସେ

ଦେଖୁଥାଏ। ଏବେ ସେ ଅନେକ କଥା ଜାଣିଗଲାଣି। ସେ ନିଶ୍ଚିତଭାବରେ ଜାଣିଗଲା ଯେ, ସେ ମାଟିତଳୁ ଯେଉଁ ରଙ୍ଗିନ୍ ଫୁଲଫଳ ଆଣିଛି ତାହା ସାମାନ୍ୟ ପଥରର ଜିନିଷ ନୁହେଁ– ସେଗୁଡ଼ିକ ଅମୂଲ୍ୟ ରତ୍ନ। ସେସବୁର ଦାମ୍ ଅନେକ ବେଶୀ।

## ଆଲାଦ୍ଦୀନ ରାଜାଝିଅକୁ ବିଭାହେବାକୁ ମନକଲା

ଆଉ ଦିନକର କଥା। ଆଲାଦ୍ଦୀନ ବଜାରକୁ ଯାଇଥାଏ। ଦେଖିଲା ବାଟଘାଟରେ ଅନେକ ପାଇକ ବୁଲୁ ବୁଲୁ ଲୋକଙ୍କୁ ତଡୁଛନ୍ତି। "ଯାଅ... ଯାଅ –ବାଟ ସଫାକର" –ଏଇ କଥା ଚାରିଆଡ଼େ ଶୁଭୁଥାଏ। ଲୋକେ ବି ଅତରଛରେ ଯେଝା ଘରକୁ ପଳାଉଥାନ୍ତି। କବାଟ କିଳି ରହୁଥାନ୍ତି। କଥା କ'ଣ ବୁଝୁ ବୁଝୁ ଜଣାଗଲା, ସେ ଦେଶର ରଜାଝିଅ ନଈକି ଗାଧୋଇ ଯାଉଛି। ସେଥିଲାଗି ବାଟଘାଟରେ କେହି ରହିବେ ନାହିଁ।

ଆଲାଦ୍ଦୀନର ମନ ବଳିଲା– ସେ ରଜାଝିଅକୁ ଦେଖନ୍ତା। ସେଇଠୁ ସେ ଜଣକ ଘରେ କବାଟ କୋଣରେ ଲୁଚି ବସିଲା। ଅଳ୍ପ ସମୟ ପରେ ରଜାଝିଅ ତା' ଦାସୀ ପରିବାରୀ ନେଇ ସେ ବାଟରେ ଆସିଲା। ଘାଟରେ ପହଞ୍ଚି ରଜାଝିଅ ତା' ମୁଣ୍ଡରୁ ଓଢ଼ଣା କାଢ଼ିଦେଲା। ଦର୍ପଣ ପରି ଚକ୍‌ଚକ୍ ମୁହଁ ଖଣ୍ଡିକ ତା'ର ଚମକି ଉଠୁଛି। ଆଲାଦ୍ଦୀନର ଆଖି ରଜାଝିଅର ସେଇ ମୁହଁ ଉପରେ ଲାଖି ରହିଲା। ଦୁନିଆଁରେ ପୁଣି ଏତେ ସୁନ୍ଦରୀ ଝିଅ ଥାଆନ୍ତି!! ଲମ୍ୱା ଲମ୍ୱା ଆଖି! ଚମକି ଉଠୁଛି ସେଇ ଆଖିର ଶୋଭା। ଖଣ୍ଡାପରି ନାକ। କଳା କଳା ମେଘକୁ ଜିଣି ତା'ର ଲମ୍ୱା କେଶ।

ଆଲାଦ୍ଦୀନ ଘରକୁ ଫେରିଆସିଲା। ସେଦିନ ତା' ମନରେ କୌଣସି କଥା ପଶିଲା ନାହିଁ। ତା' ମନ ଅସ୍ଥିର ହେଲା।

ସବୁବେଳେ ରଜାଝିଅ ଚିନ୍ତା। ରାତି ହେଲା। ତଥାପି ସୁନ୍ଦରୀ ରଜାଝିଅର ଚିନ୍ତା ତାକୁ ଘାରିଥାଏ। ସକାଳୁ ସେ ମା'କୁ କହିଲା– "ମା'! ମୁଁ ରଜାଝିଅକୁ ବାହାହେବି... ରଜାଙ୍କୁ ଯାଇ ଏକଥା କହ।"

ଏକଥା ଶୁଣି ମା'ର ଆଶ୍ଚର୍ଯ୍ୟ କହିଲେ ନସରେ। ସେ ଟାଟକା ହୋଇ କହିଲା– "ଆରେ ପୁଅ ପାଗଳ ହୋଇଯାଇନୁ ତ? ଆରେ ଏମିତି କ'ଣ କହୁଚୁ? ସିଏ ରଜାଘର କଥା। ଆମେ ଏ ସହରର ସବୁଠୁଁ ଗରିବ ଲୋକ। ବାପା ତୋର ଦରଜି କାମ କରି ଚଳୁଥିଲା। ରାଜା କାହିଁ... ଆମେ କାହିଁ...? ଆମ ହାତରେ ସେ ଝିଅକୁ ଦେବେ?"

ଆଲାଦ୍ଦୀନ ଏହା ଶୁଣି କହିଲା– "ମୁଁ ଜାଣିଥିଲି ତୁ ଏକଥା କହିବୁ। ହେଲେ ମୁଁ ତ ସେଇ ରଜାଝିଅ ଛଡ଼ା ଆଉ କାହାକୁ ବାହା ହେବିନି। ତୁ ଟିକିଏ ସାହସ ଦେ'... ଟିକେ ଉପାୟ କର।"

ତା' ମା' ପାଟିରୁ କିଛି କଥା ବାହାରିଲାନି। ହେଲେ ପୁଅ ତାକୁ ଜୋର୍ କଲା। ଶେଷକୁ ବୁଢ଼ୀ ହୀରା ନୀଳାର ଗୋଟାଏ ପୁଟୁଳା ଧରି ରଜାଘରକୁ ଯିବାକୁ ଠିକ୍ କଲା। ଯାହା ହେବାର ହେଉ। ପୁଅର ମନଲାଗିଚି– ତା' ମନ ରହୁ...।

ନାନା ଭାବରେ ଡରି ସାଙ୍କୁଡ଼ି ବୁଢ଼ୀ ରଜାଘରକୁ ଗଲା। କିନ୍ତୁ ସେଠି ବଡ଼ ଦରଜାରେ ତାକୁ ନଅର ଭିତରକୁ ଛାଡ଼ିଲେନି। ବଡ଼ ବଡ଼ ନିଶୁଆ ଜଗୁଆଳି ବୁଢ଼ୀକି ଧେକିମେକି କଲେ। ସେ ବସିଲା କାନମୁଣ୍ଡ ଆଉଁସି, ସଞ୍ଜ ହେଲାରୁ ଘରକୁ ଫେରିଲା। ବୁଢ଼ୀର ମନ ଭାଙ୍ଗିଗଲା। ସାଆନ୍ତିଆ କାରଖାନାରେ ମଳିମୁଣ୍ଡିଆ ନ ପଶିବା ଭଲ ବୋଲି ବୁଢ଼ୀ ଭାବୁଥାଏ। କିନ୍ତୁ ଆଲାଦ୍ଦୀନ ଛାଡ଼ିବା ପିଲା ନୁହେଁ। ସେ ଯାହା ବୁଝିଛି ତାହା। ସେ ମା'କୁ କହିଲା, "କୁହୁକ ଦୀପ ଆମ ପାଖରେ ଅଛି। ଆମର ବହୁତ ବଳ ମା'! ହେଲେ ସେ କଥା ତୁ କାହାକୁ କହିବୁନି।"

ଦ୍ୱିତୀୟ ଦିନ ବୁଢ଼ୀ ସିଂହଦରଜା ପାରିହେଲା। ଦରବାରକୁ ଗଲା। ସେଠି ମନ୍ତ୍ରୀ, ପାତ୍ର, କଟୁଆଳ ଓ ସଭାର ଲୋକ ବସିଚ୍ଚନ୍ତି। ଗୋଟାଏ ଅନ୍ଧାରୁଆ କୋଣକୁ ବୁଢ଼ୀ ଜାକିଜୁକି ହୋଇ ରହିଥାଏ। ସେଦିନ ବୁଢ଼ୀର ଭାଗ୍ୟ ଭଲ। ସଭା ଭାଙ୍ଗିବା ବେଳକୁ ବୁଢ଼ୀ ଉପରେ ରାଜାଙ୍କର ଆଖି ପଡ଼ିଯାଇଛି। ଜଣେ ପାଖଲୋକକୁ ପଠାଇ ରାଜା ତାକୁ ଡକାଇ ଆଣିଲେ। ବୁଢ଼ୀ ରାଜାଙ୍କ ଗୋଡ଼ତଳେ ଲମ୍ବ ହୋଇ ପଡ଼ିଗଲା। ରାଜା ତାକୁ ତଳୁ ଉଠିବାକୁ କହି ପଚାରିଲେ, "ବୁଢ଼ୀ, ମୁଁ ତତେ ଅନେକ ବେଳୁ ସେଠି ଦେଖୁଛି, ତୁ ସକାଳୁ ସେଇ ଗୋଟିଏ ଜାଗାରେ ଠିଆ ହୋଇ ରହିଚୁ। ତୋ'ର ଯଦି କିଛି କହିବାର ଅଛି କହ।"

ବୁଢ଼ୀ ବହୁତ ଡରିଯାଇଥିଲା। ଏ ରଜାଘର କଥା। କୋଉ କଥାକୁ କ'ଣ ହେବ କହିହେବନି। ତା' ପାଟିରୁ ପଦଟିଏ କଥା ବାହାରିଲାନି। ରଜା ବୁଝିଲେ... ବୁଢ଼ୀ ଡରୁଚି। ସେ ସବୁ ଲୋକଙ୍କୁ ବାହାରିଯିବାକୁ କହିଲେ। ସେଠି କେବଳ ତାଙ୍କର ପ୍ରଧାନମନ୍ତ୍ରୀ ଥା'ନ୍ତି। ସେ ବୁଢ଼ୀକି ଅଭୟ ଦେଲେ। କହିଲେ, "ଦେଖ୍, ଏଠି କେହି ନାହିଁ। ଏଥର ତୋ' ମନକଥା ଖୋଲି କହ।"

ବୁଢ଼ୀ ଥରି ଥରି କହିଲା, "ହଜୁର, ଏ ମୁଣ୍ଡ ରହିଲେ କହିବି।"

ରାଜା କହିଲେ, "ହଉ ରହିବ କହ...!"

ଆଲାଦ୍ଦୀନ କିପରି ରାଜାଝିଅକୁ ଦେଖିଲା, ସେ କିପରି ତାକୁ ବାହାହେବାକୁ ପାଗଳ ପରି ହୋଇଗଲାଣି ବୁଢ଼ୀ କହିଲା। ରାଜା ଏ ସବୁ ଶୁଣି ଖାଲି ହସିଲେ, ରାଗିଲେନି। ତା'ପରେ ପଚାରିଲେ, "ଏ ଗଣ୍ଠିଲିରେ କ'ଣ ଅଛି?"

ବୁଢ଼ୀ କହିଲା, "ପୁଅ ମୋର କିଛି ଭେଟି ପଠେଇଚି ହଜୁର୍!" ସେ ଗଣ୍ଠିଲି ଖୋଲିଲା। ରୁପାର ଥାଳିରେ ସଜାଇ

ରଖିଦେଲା ହୀରା, ନୀଳା, ମଣି, ମର୍କତ ରତ୍ନ। ଏ ରତ୍ନର ଆଲୁଅରେ ଚାରିଆଡ଼ ଝଲମଲ୍ କଲା। ରାଜା ତାଙ୍କ ଆଖି ପିଛାଡ଼ି ପାରିଲେନି। ସେ ଖୁସିରେ ପାଟିକରିଉଠିଲେ, "ବାଃ, ବାଃ, ତୁ ତ ବହୁତ ଧନୀ। ଏତେ ହୀରା, ନୀଳା ଆଣିଚୁ !!"

ରାଜା ମନ୍ତ୍ରୀଙ୍କ ଆଡ଼କୁ ଅନାଇଲେ। କହିଲେ, "କୁହ ମନ୍ତ୍ରୀ, କ'ଣ ଭାବୁଛ! ଏ ବୁଢ଼ୀ ଯୋଉ ଦାମିକା ଭେଟି ଆଣିଚି ସେ ଦୃଷ୍ଟିରୁ କଥାଟା ବିଚାର କରାଯାଇପାରେ। ଆମ ଝିଅ ଏ ପ୍ରକାର ଆୟଅଳଙ୍କାରକୁ ଖୁବ୍ ଭଲପାଏ।"

କିନ୍ତୁ ମନ୍ତ୍ରୀଙ୍କ ମନରେ ଅନ୍ୟ କଥା ଥିଲା। ସେ ଭାବୁଥିଲେ ରଜାଝିଅ କିପରି ତାଙ୍କ ପୁଅକୁ ବାହାହୁଅନ୍ତା। ତେଣୁ ବୁଢ଼ୀର ଏ ଭେଟି ଦେଖି ସେ ଚମକି ଉଠିଲେ। ଆଉ ନିଜ ମନକଥା ଗୋପନ ରଖି କୌଶଳ ଖଞ୍ଜିଲେ। ସେ ରାଜାଙ୍କ କାନରେ କହିଲେ, "ତାଙ୍କୁ ତିନିମାସ ସମୟ ମିଳିଲେ ସେ ଏହାଠାରୁ ଅଧିକ ମୂଲ୍ୟବାନ୍ ରତ୍ନ ଆଣିପାରନ୍ତେ।"

ରାଜା ଏ ରତ୍ନଗୁଡ଼ିକ ଦେଖି ସେ ସବୁର ମୂଲ୍ୟ ଜାଣିଥିଲେ। କୌଣସିଠାରେ ଏ ପ୍ରକାର ରତ୍ନ ଯେ ମିଳିବନି, ସେ କଥା ବି ତାଙ୍କୁ ଜଣାଥିଲା। ତେବେ ମନ୍ତ୍ରୀ କହୁଛନ୍ତି ତ– ସେ କଥା ହେଉ। ଝିଅଟା ବାହାହେବ! ଯାହିତାହି କରି ଫିଙ୍ଗିଦେଲେ ଚଳିବନି। ବୁଝି ସୁଝି କାମ କରିବାକୁ ହେବ।

ରାଜା ବୁଢ଼ୀକି କହିଲେ, "ଦେଖ, ବାହାସାହା କିଛି ପିଲାଖେଳ ନୁହେଁ– ଏ ଜୀବନସଉଦା। ଏଡ଼େ ବେଗି, ଏତେ ତରତରରେ ସେ ପ୍ରକାର କଥାର କିନାରା ହୁଏନି। ତିନି ମାସ ପରେ ଆସ, କ'ଣ କରାଯିବ କହିବି।"

ବୁଢ଼ୀ ବେଶ୍ ଖୁସି ମନରେ ଘରକୁ ଲେଉଟି ଆସିଲା। ଆଲାଦ୍ଦୀନ ଏ କଥା ଶୁଣି ଆନନ୍ଦରେ ନାଚିଉଠିଲା। ସେଦିନୁ ମା' ପୁଅ ଖୁସିରେ ଦିନ କାଟିଲେ। ସେମାନେ ଦିନ ଗଣିଲେ।

ଦୁଇ ମାସ ପରେ... ଦିନେ ବୁଢ଼ୀ ହଠାତ୍ ଶୁଣିଲା ଯେ ରଜାଝିଅର ବାହାଘର ହେଉଛି ମନ୍ତ୍ରୀପୁଅ ସାଙ୍ଗରେ – ଆଉ ସେଇଦିନ ସେମାନଙ୍କର ବାହାଘର ହେଉଛି। ଚାରିଆଡ଼େ ସେଥିଲାଗି ଧୁମ୍‌ଧାମ୍ ଚାଲିଛି। ଆଲାଦ୍ଦୀନ ବି ଶୁଣିଲା। ସେ ତ ଏକବାରେ ବୋକା ପାଲଟିଗଲା। ତା'ର ଏତେଦିନର ସଞ୍ଚିତ ଆଶା, ଖୁସି ସବୁ ପାଣିଫୋଟକା ପରି ଫାଟିଗଲା। ତା' ପାଦତଳରୁ ମାଟି ଖସିଗଲା ପରି ମନେହେଲା।

ଆଉ ଏଇ ବିପଦବେଳେ ଆଲାଦ୍ଦୀନର ମନେପଡ଼ିଲା କୁହୁକ ଦୀପ କଥା। ସେ ଘର ଭିତରକୁ ଗଲା। ଦୀପକୁ ଘଷିଲା। ଆଉ ସଙ୍ଗେ ସଙ୍ଗେ ଦୀପର ଅସୁର ତା' ଆଗରେ ଠିଆହୋଇଗଲା। ସେ ଅସୁରକୁ କହିଲା, "ଯାଆ... ବାହାବେଦିରୁ ରଜାଝିଅ ଓ ମନ୍ତ୍ରୀପୁଅକୁ ଶୂନ୍ୟେ ଶୂନ୍ୟେ ନେଇଆସ।"

ରାତି ହେଲା। ଜେମା ସହ ମନ୍ତ୍ରୀପୁଅର ବାହାଘର ଆରମ୍ଭ ହେଲା। ଅସୁର ଛକି ରହିଥାଏ। ଯେମିତି ସେମାନେ ବେଦୀରେ ବସିଛନ୍ତି ଯୋ... ହୋ... ହୋ... ହୋ ଗର୍ଜନ କରି ଅସୁର ସେଠି ପହଞ୍ଚିଲା। ଉପରେ ଉଡ଼ାଇ ଉଡ଼ାଇ ସେ ବରକନ୍ୟାକୁ ନେଇଆସିଲା। ଆଲାଦ୍ଦୀନ ମନ୍ତ୍ରୀପୁଅକୁ ଗୋଟେ କୋଠାରୀରେ ବନ୍ଦୀକରିଦେଲା, ଆଉ ରାଜାଝିଅକୁ ନିଜ ସାଥୀରେ ରଖିଲା। ସକାଳୁ ସେମାନଙ୍କୁ ଫେରାଇଦେଲା।

ଦ୍ୱିତୀୟ ଦିନ ସେଇ କଥା ହେଲା। ତୃତୀୟ ଦିନ ବି ସେଇ କଥା। ଏଇପରି ଚାରି ପାଞ୍ଚଦିନ ଗଲା। ଏଥର ମନ୍ତ୍ରୀପୁଅର ବୁଦ୍ଧି ହଜିଗଲା। ସେ କିଛି ବୁଝିପାରୁନଥାଏ ଏମିତି କାହିଁକି ହେଉଛି। ଏଣେ ରଜାଝିଅ ତା' ବାପକୁ କହିଲା, "ବାପା, ଏ ବାହା ବନ୍ଦ କର! ଦେଖ, ସବୁଦିନ ବାହାବେଦିକୁ ନଯାଉଣୁ ଅସୁରଟେ କୁଆଡୁ ଆସି କୁଆଡ଼େ ବୋହିନେଉଚି। ଏ ବାହା ବନ୍ଦ ନ କଲେ ମୋ' ଜୀବନ ଯିବ।"

ଏ ଘଟଣାରେ ରଜାଙ୍କ ବୁଦ୍ଧି ବି ବଣାହୋଇଯାଇଥାଏ। ତାଙ୍କର ସିପାହି, ସେନାପତି କେହି ଚେଷ୍ଟା କରି ରଜାଝିଅକୁ ରଖିପାରୁନାହାନ୍ତି। ଏତେ ବୁଦ୍ଧିଆ ମନ୍ତ୍ରୀ! ତାଙ୍କର ସବୁ ବୁଦ୍ଧି କୁଆଡ଼େ ଉଭେଇଯାଉଛି। ବାଧହୋଇ ରାଜା କହିଲେ– "ଏ ବାହାଘର ବନ୍ଦ!"

## ଆଲାଦ୍ଦୀନ ରଜାଝିଅକୁ ବିଭାହେଲା

ଆଲାଦ୍ଦୀନ ଜାଣିଲା, ବାହାଘର ବନ୍ଦ। ସେ ବି ଟିକେ ଖୁସିହେଲା। ଦୀପର ଅସୁରକୁ ବହୁତ ବହୁତ ଧନ୍ୟବାଦ ଦେଲା। ଏଣେ ତିନିମାସ କଣ୍ଟ ପୂରିଲା। ସେ ତା' ମାଆକୁ ରଜାଙ୍କ ପାଖକୁ ପଠାଇଲା। ରଜା ସିନା ମନ୍ତ୍ରୀ କଥାରେ ଭୁଲିଥିଲେ, ହେଲେ ସେଦିନର କଥା ଭୁଲିନଥିଲେ। ସେ କଥାକୁ ତଉଲୁଥିଲେ। ଆଲାଦ୍ଦୀନ ଦର୍ଜିର ପୁଅ। ତା'ର କୁଳ ନାହିଁ, ବୁନିଆଦ ନାହିଁ। ଲୋକେ ତାକୁ ସମ୍ମାନ ଦେବେ ନାହିଁ। ତେଣୁ ତାକୁ ଝିଅ ଦେବାକୁ ତାଙ୍କର ଇଚ୍ଛା ହେଲାନି। ଏଇଥିପାଇଁକି ସେ ମନ୍ତ୍ରୀଙ୍କ କଥାକୁ ସମର୍ଥନ କରିଥିଲେ।

ଏଣେ ଆଲାଦ୍ଦୀନର ମା' ପହଞ୍ଚିଲା। ମନ୍ତ୍ରୀ କିଛି ଛାଡ଼ିବାର ଲୋକ ନୁହନ୍ତି। ସେ କୌଶଳ ଖଞ୍ଜିଲେ। କହିଲେ, "ହଜୁର, ଆପଣ ଆଲାଦ୍ଦୀନଠୁଁ ଆହୁରି ମୂଲ୍ୟବାନ୍ ରତ୍ନ ମାଗନ୍ତୁ। କୋଉଠୁ ପାଇଥିଲା ବୋଲି ସେତେବେଳେ ଦେଇଦେଇଥିଲା– ଏଥର ଦେଇପାରିବନି।"

ରାଜାଙ୍କ ମନକୁ କଥାଟା ଖୁବ୍ ଘେନିଲା। ସେ ବୁଢ଼ୀକି କହିଲେ, "ଦେଖ୍ ବୁଢ଼ୀ, ମୁଁ ତୋ' କଥା ବେଶ୍ ମନେରଖିଛି। ହେଲେ, ମୋର ଗୋଟିଏ ସର୍ତ୍ତ ଅଛି। ଆଲାଦ୍ଦୀନ ମୋ ଝିଅକୁ ଚାଳିଶଟି ସୁନାଥାଳିରେ ନାନା ରତ୍ନ ଭେଟି ଦେଉ। ଏତକ

କଲେ ତା' କଥା ବିଚାର କରାଯିବ ।''

ଆଲାଦ୍ଦୀନର ମା' ଏକଥା ଶୁଣି ମୁଣ୍ଡରେ ହାତ ଦେଲା । ମୁହଁ ଶୁଖାଇ ସେ ତା' ଘରକୁ ଫେରିଲା । ପୁଅକୁ ସବୁକଥା କହିଲା । ପୁଅ କହିଲା, ''ମା', ଇଏ ଗୋଟାଏ କୋଉ କଥାରେ କଥା ମ ? ରାଜା ଏତେ କମ୍ ଜିନିଷ ମାଗିଛନ୍ତି ! ଏଥିରୁ ହଜାରେ ଗୁଣ ଅଧିକ ମାଗିଥିଲେ ବି ମୋର ଖାତିର ନ ଥିଲା ।''



ସେ ଦୀପର ଅସୁରକୁ ଡାକିଲା । ତାକୁ ସବୁ ବୁଝାଇଦେଲା । ସଙ୍ଗେ ସଙ୍ଗେ ସେ ଅସୁର ତିନିଥର ତାଳି ମାରିଲା । ଆଉ ସେ ଶବ୍ଦ ନ ସରୁଣୁ ଚାଳିଶ ଜଣ ଯୁଆନ୍ ହାଜର ହୋଇଗଲେ । ସେମାନେ ରଜାଘର ପୋଷାକ ପିନ୍ଧିଥିଲେ । ସୁନାର ଏଡ଼େ ଏଡ଼େ ଥାଳିରେ ଗଦା ଗଦା ସୁନା, ହୀରା, ନୀଳା ସେମାନେ ବୋହିଥିଲେ । ଆଉ ସେମାନଙ୍କ ପଛରେ ଛିଡ଼ାହୋଇଥିଲେ ଚାଳିଶ ଜଣ ଯୁବତୀ ।

ରୂପ ପୋଷାକରେ ସେମାନେ ଝଲସୁଥିଲେ। ସତେ ଯେପରି ସେମାନେ ବି ଜଣେ ଜଣେ ରଜାଝିଅ।

ସେମାନେ ଗୋଟିଏ ପଟୁଆରରେ ଗଲେ। ସାରା ସହର ଉଠିଲା ପଡ଼ିଲା। ଲୋକେ ଏମାନଙ୍କୁ ଦେଖିବାକୁ ଭେଳା ଭେଳା ହେଲେ। ଏପରି ଦୃଶ୍ୟ ସେମାନଙ୍କ ପାଇଁ ନୂଆ। ଏତେ ଏତେ ରତ୍ନ ସେମାନେ ସ୍ୱପ୍ନରେ ବି କଳନା କରିପାରି ନଥିଲେ। ସେମାନେ ଆବାକାବା ହୋଇଗଲେ। ହେଲେ କଥାଟାର ଗୋଟିଏ ବଡ଼ ପ୍ରଭାବ ପଡ଼ିଲା। ସବୁଆଡ଼େ ରାଜାଝିଅର ବାହାଘର କଥା, ଆଲାଦ୍ଦୀନର କଥା ପଡ଼ିଲା। ଲୋକେ ଜାଣିଲେ ରାଜାଝିଅ ବାହାହେବ ଆଲାଦ୍ଦୀନକୁ।

ଏମାନେ ସହର ବୁଲିଲେ। ସହରର ଛୁଆ ପିଲା, ପୁରୁଷ ସ୍ତ୍ରୀ, ବୁଢ଼ା ବୁଢ଼ୀ ସମସ୍ତେ ଦେଖି ବାହା ବାହା କରୁଥାନ୍ତି। ସିଂହଦରଜାରେ ସିପାହିମାନେ ସେମାନଙ୍କୁ ବାଟ ଛାଡ଼ିଦେଲେ। ଏ ଦଳର ଦଳପତି ସିପାହିମାନଙ୍କୁ କହିଲା, "ଦେଖନ୍ତୁ, ଆମର ମାଲିକ ଏହା ପରେ ଆସିବେ। ରଜା ଯେମିତି ଚାହିଁଥିଲେ ସେଇଭଳି ଜିନିଷପତ୍ର ସେ ପଠାଇଛନ୍ତି। ରାଜାଙ୍କୁ ଖବର ଦିଅ।" ଆଉ ଆଲାଦ୍ଦୀନର ମା' ବି ଥାଏ ସାଥିରେ।

ଏମାନଙ୍କ ଆସିବା ଖବର ରାଜାଙ୍କ କାନରେ ଅନେକ ଆଗରୁ ବାଜିସାରିଥାଏ। ସେ ଆଦରରେ ସେମାନଙ୍କୁ ପାଛୋଟି ନେବାକୁ ଆସିଲେ। ତାଙ୍କ ମନରେ ଅନେକ ବିସ୍ମୟ! ସେ ଭାବୁଥିଲେ, ଗରିବ ଦରଜିର ପୁଅ ଆଲାଦ୍ଦୀନ, ସିଏ କ'ଣ ଏତେ ରତ୍ନ ଅଳଙ୍କାର ଯୋଗାଡ଼ କରିପାରିବ ନା ରଜାଝିଅକୁ ବାହାହେବ ? ତେବେ କଥା ତ ଦେଇସାରିଛନ୍ତି। ପୁଣି ଏଡ଼େ କଠିନ ପରୀକ୍ଷା ଦେଇଥିଲେ ସେ – ଆଲାଦ୍ଦୀନ ସେ ପରୀକ୍ଷାରେ ଉତୁରିଗଲା। ଏଥର ବଚନ ଛୁଡ଼ିବା କି କଥା ଟାଳିବା ଭଲ ନୁହେଁ! ଲୋକେ ନିନ୍ଦିବେ।

ସେ ସବୁକଥା ଭୁଲି ବାହାରିଆସିଲେ। ଆଲାଦ୍ଦୀନର ମା'କୁ କହିଲେ, "ହେଲା ବୁଢ଼ୀ, ହେଲା। ଏସବୁ ଦେଖି ମୁଁ ଖୁବ୍ ଖୁସି। ପୁଅକୁ କୁହ, ଝିଅ ବାହା ଦେବାକୁ ମୁଁ ରାଜି। ସେ ଯେତେ ବେଗି ପାରେ ସାଜସରଞ୍ଜାମ ନେଇ ଆସୁ।"

ରାଜା ସବୁ ଧନରତ୍ନତକ ରଖିଲେ। ବୁଢ଼ୀ ଫେରିଯାଇ ପୁଅକୁ ସବୁ କହିଲା। ଆଲାଦ୍ଦୀନର ଆନନ୍ଦ ଦେଖେ କିଏ ? ସେ ଦୀପର ଅସୁରକୁ ଡାକି ବାହାଘରର ବରାଦ ଦେଲା। ଆଖିର ପଲକରେ ସବୁ ତିଆର। ଚମତ୍କାର ଘୋଡ଼ା। ତା' ଉପରେ ଆୟ-ଅଳଙ୍କାରର ଅନେକ ସାଜସଜା। ଆଲାଦ୍ଦୀନ ପାଇଁ ଅଷ୍ଟରତ୍ନର ଅପୂର୍ବ ପୋଷାକ। ସେ ରାଜାଧିରାଜର ଅଲିଅଳ ପୁଅଠୁ ଆହୁରି ବେଶି ସୁନ୍ଦର ଦିଶୁଥାଏ। ଶହ ଶହ ଚାକରବାକର। ସମସ୍ତେ ଏକୁ ଆରେକ ଚମତ୍କାର ପୋଷାକ ପରିଚ୍ଛଦ ପିନ୍ଧିଥାନ୍ତି।

ଗୋଟା ସହରରେ ହୁଲସ୍ଥୁଲ ପଡ଼ିଗଲା। ଆଲୁଅଝାଡ଼, ବାଜାବଜନ୍ତର, ଫୁଲଫାନୁସ୍, ବାଣର ସୀମା ନାହିଁ। କେହି ଆଉ ଘରେ ରହିଲେ ନାହିଁ— ସମସ୍ତେ ଆସି ରାସ୍ତାରେ ଭିଡ଼ ଜମାଇଲେ। ଚାରିଆଡ଼େ ଗହଗହ କମ୍ପୁଥାଏ। ସବୁରି ମୁହଁରେ ଏଇ ଅପୂର୍ବ ପଟୁଆରର କଥା। ଇମିତି ପଟୁଆର କେହି କେବେ ଦେଖିନଥିଲା, ଆଉ କେହି କେବେ ଶୁଣିନଥିଲା।

ରଜାଙ୍କ ପାଖରେ ସବୁ ଖବର ଆସି ପହଞ୍ଚୁଯାଉଥାଏ। ରଜା ବରକୁ ବରଣି କରିବାକୁ ତିଆରି ହୋଇ ରହିଥାନ୍ତି। ସେ ଦେଖିଲେ ଆଲାଦ୍ଦୀନ ସପନପୁରୀର ରାଜକୁମାର ପରି ଅପୂର୍ବ ସୁନ୍ଦର ଦିଶୁଛି। କୌଣସି ଦେଶର ରଜାପୁଅ ଏହାର ସମକକ୍ଷ ହେବ ନାହିଁ। ଆଉ ଏଇପରି ଯୋଗ୍ୟ ବର ଥାଉ ଥାଉ ସିଏ ଏ ଯାଏଁ ତାଙ୍କ ଝିମାକୁ ବାହାଦେଇନଥିଲେ ! ମନ୍ତ୍ରୀପୁଅ ଏହାର କୋଉ ଗୁଣକୁ ସରିହେବ କି ?

ରଜା ତ ଖୁସିରେ ପାଗଳ। ସେ କହିଲେ, "ଆଲାଦ୍ଦୀନ,

ଏଇ ମୁହୂର୍ତ୍ତରେ ମୋ ଜେମାକୁ ମୁଁ ତୁମ ହାତରେ ସମର୍ପିଦେଉଛି। ତମେ ଆଉ ଡେରିକରନି, ତାକୁ ଗ୍ରହଣ କର। ମୋର ଯେଉଁ ଭୁଲ ହୋଇଯାଇଛି ତା'ର ସଂଶୋଧନ ହେବ।''

ଆଲାଦ୍ଦୀନ ବି ଖୁସି ହେଲା। ସେ କହିଲା, ''ହଜୁର, ଯାହା ବିଳମ୍ବ ହେଲାଣି ହେଲାଣି, ଆଉ ଟିକେ ସବୁର କରନ୍ତୁ। ମୁଁ ଜେମାଙ୍କ ପାଇଁ ଉପଯୁକ୍ତ ଘରଟିଏ ଆଗେ ତିଆରିକରେ। ମୋର ତ ଯାହିତାହି କୁଡ଼ିଆ– ସେଇଟା କ'ଣ ତାଙ୍କ ପାଇଁ ଉପଯୁକ୍ତ? ଏଇ ଆପଣଙ୍କ ରାଜବାଟୀ ପାଖରେ କିଛି ଜାଗା ଦେବେ କି? ସେଇଠି ମୋ' ନଅର ମୁଁ ତିଆରି କରନ୍ତି; ଆଉ ସବୁବେଳେ ଆପଣଙ୍କ ସେବା କରିବାର ସୌଭାଗ୍ୟ ପାଆନ୍ତି।''

ରାଜା କହିଲେ, ''ଇଏ କି କଥା! ଯେତେ ଜାଗା ଚାହୁଁଚ ସବୁ ନିଅ। ଏବେ ତ ଏ ରାଜ୍ୟସାରା ତମର ହେବ। ଯେକୌଣସିମତେ ବିବାହର ଯୋଗାଡ଼ ଖୁବ୍ ଶୀଘ୍ର କରିବାକୁ ହେବ।'' ରାଜା ଆଲାଦ୍ଦୀନକୁ କୁଣ୍ଢାଇ ପକାଇଲେ। ସେ ଆନନ୍ଦରେ ଗଦ୍‌ଗଦ ହେଉଥିଲେ। ଆଲାଦ୍ଦୀନ ମେଲାଣି ନେଇ ଘରକୁ ଫେରିଗଲା।

ଘରେ ପହଞ୍ଚିଲା ଆଲାଦ୍ଦୀନ। ତା' କୋଠରିକି ଗଲା। ସେ ଡାକିଲା ଦୀପର ଅସୁରକୁ। କହିଲା, ''ଦେଖ, ରଜାଙ୍କ ନଅର ଆଗରେ ମୋପାଇଁ ନଅର ତିଆରିହେବ। ତମକୁ ବତାଇବା ଦରକାର ନାହିଁ। ସେଇଠି ତମ ସହ ମୋ'ର ଦେଖା।'' ଅସୁର ଜୁହାର କରି ବିଦାୟନେଲା।

ସକାଳୁ କୁଆ କା' ନକରୁଣୁ ଦୀପର ଅସୁର ଡାକିଲା ଆଲାଦ୍ଦୀନକୁ, ''ହଜୁର, ଆସନ୍ତୁ . . . ବିଜେ କରନ୍ତୁ – ଦେଖିଯାଆନ୍ତୁ ଆପଣଙ୍କ ନୂଆ ନଅର।''

ଆଲାଦ୍ଦୀନ ଯାଇ ନଅର ଦେଖିଲା। ଏ ଗୋଟାଏ ନଅର କି ଇନ୍ଦ୍ରପୁରୀ! ଏତେ ଅଳ୍ପ ସମୟ ମଧ୍ୟରେ ଏଭଳି ନାହିଁ ନ

ଥିବା କୋଠା ! ସେ ରଜାଙ୍କୁ ନିମନ୍ତ୍ରଣ କଲା । ରଜା ନଅର ଦେଖି ସେ ପୃଥିବୀରେ ଅଛନ୍ତି ନା କୋଉ କୁହୁକ ପୁରୀରେ ଅଛନ୍ତି ଜାଣିପାରିଲେନି । ସେ ତାଙ୍କ ରାଜସଭାର ପାତ୍ରମନ୍ତ୍ରୀ, ବିଶ୍ୱକର୍ମା ସର୍ଭିଙ୍କୁ ଡକାଇଲେ । ସେମାନେ ନଅରସାରା ବୁଲି ଦେଖିଲେ । ସମସ୍ତେ ତାରିଫ୍ କଲେ । ସମସ୍ତଙ୍କ ମୁହଁରେ ଆଲାଦ୍ଦୀନର ପ୍ରଶଂସା, ତା' ନଅରର ପ୍ରଶଂସା ! ଏ ନଅରର ନାଁ ରତନ-ମହଲ ।

ରାଜ୍ୟସାରା ଆନନ୍ଦରେ ଲହରୀ ଖେଳିଗଲା । ବାହାଘରର କାହାଳୀ ଘରେ ଘରେ ଶୁଭିଲା । ଘରେ ଘରେ ଦୀପ ଜଳିଲା । ଗୋଟା ରାଇଜରେ ଦୀପ . . . ଦୀପ . . . ! ଦୀପର ସୀମା ନାହିଁ । ରାତିର ସବୁ ଅନ୍ଧାର ଦୂର ହୋଇଗଲା । ଲୋକେ ନାଚିଲେ, ଗୀତ ଗାଇଲେ । ଆଉ ରଜାଝିଅ ବାହାହେଇ ଦାସୀ ପରିବାରୀ ନେଇ ନୂଆ ଘରକୁ ଆସିଲା । ଆଲାଦ୍ଦୀନର ମନର ଇଚ୍ଛା ପୂରିଲା ।

ସିଏ ରଜାଝିଅକୁ କୁହୁକ ଦୀପ କଥା କହିନଥାଏ । ଏ ଯେ ଗୁମର କଥା, କହିବ କିପରି ? କହିଦେଲେ କ'ଣ ଘଟଣ ଅଘଟଣ ଘଟିବ କିଏ ଜାଣେ ? ରଜାଝିଅ ତାକୁ ଭଲପାଇନପାରେ; ତାକୁ ସମ୍ମାନ ଦେଇନପାରେ ! ସେଥିପାଇଁ ସେ ଦୀପଟିକି ଗୋଟେ ଅନ୍ଧାରିଆ କୋଣରେ ଲୁଚାଇ ରଖିଥାଏ ।

ଏହିପରି ଖୁସିରେ ଖୁସିରେ ସେମାନଙ୍କ ଦିନ ଯାଉଥାଏ । ଏବେ ସେ ଘରେ କୋଉ କଥାର ଅଭାବ ? ରାଜାତ ଆଲାଦ୍ଦୀନଙ୍କୁ ନିଜର ଜୀବନ କରିଥାନ୍ତି । ଯୁଆଡ଼େ ଗଲେ ସେଆଡ଼େ ନିଅନ୍ତି । ତାକୁ ପୁଅଠୁ ବଳି ବେଶି ଭଲପାଉଥାନ୍ତି ।

## କୁହୁକ ଦୀପ ଗୁଣିଆ ହାତରେ ପଡ଼ିଲା

ଆଲାଦ୍ଦୀନ ରଜାଝିଅକୁ ନେଇ ଖୁସିରେ ଖୁସିରେ ହୁଏତ ସାରା ଜୀବନ କାଟିଦେଇଥାନ୍ତା । କିନ୍ତୁ ସେଇ ଗୁଣିଆଟା

ବଞ୍ଚିରହିଥାଏ । ସେ ବୁଢ଼ା ଯାଦୁକର ଆଫ୍ରିକା ଚାଲିଯାଇଥିଲା । ହେଲେ, ମନ୍ତ୍ରଯନ୍ତ୍ର ତାକୁ ତ ଅନେକ ଜଣା । ଗୁଣିଆ ପାଖରେ ଗୋଟେ ଛୋଟ କୁହୁକ ଦର୍ପଣଥାଏ । ସେହି ଦର୍ପଣରେ ଦେଖି ସେ ସବୁ ଖବର ଜାଣେ । ଆଉ ଏଇପରି ସିଏ ଆଲାଦ୍ଦୀନର ଖବର ବି ଜାଣିପକାଇଲା ।

ଆଲାଦ୍ଦୀନର ସୁଖଶିରୀ ଦେଖି ତା'ର ନାହି ଡେଇଁଲା । ସେ ଦାନ୍ତ କଡ଼ମଡ଼ କଲା । ଓଠ କାମୁଡ଼ିଲା । ରାଗରେ ପାଗଳ ହୋଇଗଲା । କହିଲା, "ଆରେ ଆରେ, ଦରଜି ଟୋକା, ଭୋକରେ ତୁ ମରୁଥିଲୁ ! ଆଉ ଆଜି ରଜାଝିଅକୁ ପାଇ ମଉଜରେ ରହୁଚୁ !! ହାୟ ! ହାୟ ରେ ମୋ'ର କୁହୁକ ଦୀପ !! ସେଇ କୁହୁକ ଦୀପକୁ ପାଇବାକୁ ମୁଁ କେତେ ଚେଷ୍ଟା ନ କରିଚି ! ସେ ଦୀପ ଆଜି ତୋରି ହାତରେ ! ମାତ୍ର ମନେରଖିଥା'ରେ ଟୋକା, ତୋତେ ମୁଁ ଛାଡୁନି– ତୋତେ ମାରିବି . . . ନିଶ୍ଚୟ ମାରିବ !"

ଦିନରାତି ତା'ର ଏକମାତ୍ର ଚିନ୍ତା ସେ କିପରି କୁହୁକଦୀପକୁ ହାତପଇଠ କରିବ, ଆଉ ଆଲାଦ୍ଦୀନକୁ ମାରିବ । ସେ ଆଫ୍ରିକାରୁ ଦୌଡ଼ିଲା ଚୀନକୁ । ଆଲାଦ୍ଦୀନର ଘର ପାଖରେ ପହଞ୍ଚିଲା, ତା'ରି ଘରପାଖେ ଲୁଚି ରହି ସୁଯୋଗ ଉଣ୍ଟୁଥାଏ – କୌଣସିମତେ କୁହୁକ ଦୀପକୁ ଆଣିବ . . . ଏଇ ତା'ର ପାଞ୍ଚ ।

ଦିନେ ଆଲାଦ୍ଦୀନ ଯାଇଥାଏ ଶିକାରକୁ । ଏଣେ ଗୁଣିଆ ଜଗି ବସିଚି । ସେ ଆଗରୁ ଘଣ୍ଟରା ପାଖରୁ ଗୁଡ଼ାଏ ପିତଳ ତିଆରି ଦୀପ ଆଣି ରଖିଚି– ସୁବିଧା ଦେଖି କାମ କରିବ । ସେ ଦୀପଗୁଡ଼ିକୁ ମାଜିମୁଜି ପୁଟଦେଇ ଚକ୍‌ଚକ୍ କରିନେଇଚି । ସେ ସାଜିଲା ଜଣେ ବୁଲାବିକାଳି । ଆଉ ଆଲଦ୍ଦୀନର ଦରଜାରେ ଡାକିଲା, "ପୁରୁଣା ଦୀପ ଦିଅ . . ନୂଆ ଦୀପ ନିଅ । ଭଙ୍ଗା ଫଟା ପୁରୁଣାଦୀପ ମରାମତି କରିନିଅ ।"

ଜେମା ତାଙ୍କର ଚାକରାଣୀକି ପଠାଇଲେ, କ'ଣ କହୁଚି

ଲୋକଟା ବୁଝିବାକୁ। ଚାକରାଣୀ ଗୁଣିଆକୁ ଦେଖିଲା। ଭାବିଲା, ସେ ଗୋଟେ ଗାଉଁଲି ପାଗଳ ଲୋକ ହେଇଥିବ। ଆଉ ଆସି ଜେମାକୁ ସେଇ କଥା ସେ କହିଲା— ନ ହେଲେ, ନୂଆ ଦୀପ ଦେବ ଆଉ ପୁରୁଣା ଦୀପ ନେବ! ପାଗଳ ନ ହେଲେ ଏ ପ୍ରକାର କାମ କିଏ କରିବ?



ଏଣେ ଆଉ ଜଣେ ଚାକରାଣୀ ଘରସାରା ଖୋଜି ଖୋଜି ଆଲାଦ୍ଦୀନର ସେଇ ଦୀପଟି ପାଇଲା। ସେଇଟା ଗୋ୍ଟେ ପୁରୁଣା ମସିଆ ଦୀପ। ସେଇଟା ବଦଳ ଦେଇ ଗୋଟିଏ ନୂଆ ଦୀପ ନେଇଯିବ। ଜେମାଙ୍କର ଭଲ କାମଟାଏ ସେ କରିପାରିବ। ହାୟ, ବିଚାରୀ! ତା'ର ମୂଲ୍ୟ ସେ କାହୁଁ ଜାଣିବ?

ସେଇ ଦୀପଟାକୁ ଦେଖାଇ ଚାକରାଣୀ କହିଲା, "ଜେମା ମଣିମା! ଏ ପୁରୁଣା ମଇଳା ଦୀପଟା ଘର କୋଣରେ ପଡ଼ିଥିଲା। ଏଇଟା ବଦଳାଇ ନୂଆ ଦୀପଟେ ଆଣିଲେ ଭଲହେବ!" ଜେମା

ତ ଦୀପର ଗୁଣ ଜାଣିନଥିଲେ – ସେ ସଙ୍ଗେ ସଙ୍ଗେ ଚାକରାଣୀକୁ ଅନୁମତି ଦେଇଦେଲେ। ଚାକରାଣୀ ଦଉଡ଼ିଲା ଓ ଗୁଣିଆ ହାତରେ ସେ ଟେକିଦେଲା କୁହୁକ ଦୀପଟିକି।

## ଆଲାଦ୍ଦୀନର କପାଳ ଫାଟିଲା

ଗୁଣିଆ ତ ଟାକି ବସିଥିଲା – ସେ ଆନନ୍ଦରେ ଡେଇଁଲା। ଦୀପଟିକି କୁଣ୍ଢେଇ ଧରି ସେ ନାଚିଉଠିଲା। ତା'ର ଯେତକ ନୂଆ ଦୀପ ଥିଲା ସବୁତକ ସେ ଚାକରାଣୀ ଆଡ଼କୁ ଫିଙ୍ଗିଦେଲା। ଚାକରାଣୀ କିଛି ବୁଝିପାରିଲାନି। ସେ ନୂଆ ଦୀପଗୁଡ଼ାକ ଧରି ଘରକୁ ଫେରି ଆସିଲା। ସେ ବି ବହୁତ ଖୁସି – ଗୋଟେ ପୁରୁଣା ଦୀପ ଦେଇ ଏତେ ଗୁଡ଼େ ନୂଆ ଦୀପ ପାଇଲା।

ଏଇ ଦୀପ ପାଇବା ପାଇଁ ସେ କେତେ କଷ୍ଟ ନ କରିଚି! ଆରେ, ସେ ଟୋକାଟା ଏଇ ଦୀପ ନେଇ କ'ଣ ନ କଲା! ସେ ଦୀପଟିକୁ ମୁଣ୍ଡରେ ମୁଣ୍ଡାଇଲା, କୁଣ୍ଢେଇପକାଇଲା, ଦିହଯାକ ବୁଲାଇନେଲା, ଆଉ ପାଟିକଲା – "ଏ ମୋ'ର ଦୀପ! ମୋ'ର ପ୍ରିୟ ଦୀପ! ଏଥର ଗଲା ମୋର ପାପ। ମୁଁ– ମୁଁ ହୋଇବି ଧନୀ... ତାକ୍ ଧିନା ଧିନ୍।"

ସେ ଦୀପକୁ ରଗଡ଼ିଲା। ଅସୁର ବାହାରି ଆସିଲା। ଗୁଣିଆ କହିଲା – "ଏଇ ରାଜପୁରୀ, ଏ ରାଜାଝିଅ... ଏ ସବୁକୁ ନେଇ ଯା' ବାହାରି – ଚାଲ ବେଟା ଆଫ୍ରିକା... ଯୋ... ହୋ... ହୋ... ମୋ'ର ଆଉ କିଛି ନାଇଁ ଦକା।"

ଅସୁର ଆଉ ତା'ର ସାଙ୍ଗସାଥୀ ଆସିଲେ। ରାଜମହଲଟିକୁ ଶୂନ୍ୟେ ଶୂନ୍ୟେ ଟେକିନେଲେ; ଆଉ ଆକାଶ ତଳରେ ଭସାଇନେଲେ। ବଣ, ପାହାଡ଼, ମରୁଭୂମି, ନଇ, ନାଳ ଡେଇଁ ଚାଲିଛି ମହଲ। ରାଜାଝିଅ ଆବାକାବା ହୋଇଗଲା। କ'ଣ ହେଉଚି

ସିଏ ଜାଣିପାରିଲାନି । ଛାନିଆରେ ସେ କପାଳକୁ ଆଦରି ବସିରହିଲା । ତା' ଆଖିରୁ ଲୁହଧାର ବୋହିଚାଲିଲା ।

ତା' ଆରଦିନ ସକାଳୁ ନିଦ ଭାଙ୍ଗିଲା ରଜାଙ୍କର । ସେ ଝରକା ଖୋଲି ବାହାରକୁ ଚାହିଁଲେ । ନିତିଦିନ ସେ ପହିଲେ ଝିଅର ଘର ଆଡ଼କୁ ଚାହାନ୍ତି । କିନ୍ତୁ ସେ ଦିନ କ'ଣ ସେ ଦେଖିଲେ – ଜେମାର ଉଆସ ନାଇଁ । ସେ ନିଜେ ଶୋଇଚ଼ନ୍ତି କି ଚେଇଁଚ଼ନ୍ତି ବୁଝିପାରିଲେ ନାହିଁ । ସେ ଉଠିଲେ । ସେ ଭଲକରି ବାହାରକୁ ଚାହିଁଲେ । ତେବେ ବି କୋଠାକୁ ଦେଖିପାରିଲେନି । ସେଠି ତ କୋଠା ନ ଥିଲା – ସେ ଦେଖନ୍ତେ କୁଆଡୁ ?

ସେ ମନେ ମନେ ପାଟି କରି ଉଠିଲେ । କେଡ଼େ ଆଦରରେ ସେ ଝିଅଟିକି ବଢ଼େଇଥିଲେ । ଆଜି ସେ ନାଇଁ । ତା' ବିନା ଚାରିଦିଗ ତାଙ୍କୁ ଅନ୍ଧାର ଦିଶିଲା । ଜେମା କଥା ଭାଳି ତାଙ୍କ ବୁକୁ ଦୁଃଖରେ ଫାଟିଗଲା । ତାଙ୍କ ଆଖିରୁ ଧାର ଧାର ଲୁହ ବୋହିଲା ।

ରାଜା ତାଙ୍କର ପ୍ରଧାନମନ୍ତ୍ରୀଙ୍କୁ ଡକାଇପଠାଇଲେ । ତାଙ୍କୁ ଜେମାର କଥା କହିଲେ । ଏ ବିପଦରେ କ'ଣ କରାଯିବ ପଚାରିଲେ । ମନ୍ତ୍ରୀ ତ ଇମିତି ଗୋଟେ ମଉକା ଖୋଜୁଥିଲେ । କେତେ ଆଶା ସେ କରିନଥିଲେ... ତାଙ୍କ ପୁଅ ରଜାଝିଅକୁ ବାହା ହୁଅନ୍ତା । ଅଥଚ ଏଇ ଆଲାଦ୍ଦୀନ ଯୋଗୁଁ ତାଙ୍କର ସବୁ ପାଞ୍ଚ ଫସର ଫାଟିଗଲା । ତେଣୁ ସେ ତାକୁ ଦୁଇ ଆଖିରେ ଦେଖିପାରୁନଥିଲେ । ଏବେ ସୁବିଧା ପାଇ ରାଜାଙ୍କୁ ନାନା କଥା ଶିଖାଇଲେ ।

ଏଣେ ଲୋକ ଚାରିଆଡ଼କୁ ଖୋଜିବାକୁ ଗଲେ । କେଉଁଠି ବି ସେମାନେ ରଜାଝିଅ କି ଜେମାମହଲ ଦେଖିଲେନି । ଜେମାର କିଛି ଖବର ମିଳିଲାନି । ରାଜାଙ୍କ ମୁଣ୍ଡ ଗରମ ହୋଇଗଲା । ସେ ରାଗରେ ଜଳିଲେ । ପାଖେ ପାଖେ ମନ୍ତ୍ରୀ ଥାଆନ୍ତି; ଲସରପସର ହୋଇ ତାଙ୍କ ପଛରେ ବୁଲୁଥାଆନ୍ତି । ଶେଷକୁ ରଜା ପାଟିକରିଉଠିଲେ,

"ଆଲାଦ୍ଦୀନ – ସେଇଟା ଗୋଟେ ଶଇତାନ ! ତା'ର ବେକକୁ କାଟିଆଣ । ଏ ଯେତେ ବଦମାସି ସବୁ ତା'ରି କାମ ।"

ଆଲାଦ୍ଦୀନ ଶିକାରକୁ ଯାଇଥିଲା । ନଅରଠାରୁ ସେ ଅନେକ ଦୂରରେ ଥାଏ । ପାଇକମାନେ ରଜାଙ୍କଠୁ ଆଦେଶ ପାଇଲେ ତ ଧାଇଁଲେ । ଆଉ ସେତେବେଳେ ସେ ଦିଗରୁ ଫେରିଆସୁଥାଏ ଆଲାଦ୍ଦୀନ । ସେ ବିଚରା କିଛି ଜାଣେନି । ଫେରୁଚି ଖୁସିରେ ।



ଦେଶର ସବୁ ଲୋକ, ସୈନ୍ୟସାମନ୍ତ ତାକୁ ଭଲପାଉଥିଲେ । ସେ ଯେ କେତେ ଭାବରେ କେତେ ଲୋକଙ୍କୁ ସାହାଯ୍ୟ କରିଚି ! ତେଣୁ କେହି ତାକୁ କିଛି ଭରସି କହୁନାହାନ୍ତି ।

ଲୋକମାନେ ତା' ସହ ଉଆସ ଆଡ଼କୁ ଆସୁଥାନ୍ତି । ଶେଷରେ ବାଧହୋଇ ଆଲାଦ୍ଦୀନକୁ ରଜାଙ୍କ ଆଦେଶ କଥା ଶୁଣାଇଦିଆଗଲା, ଆଉ ତାକୁ ବାନ୍ଧି ରଜାଙ୍କ ପାଖକୁ ନିଆଗଲା । ଆଲାଦ୍ଦୀନ କିଛି ବୁଝିପାରିଲାନି । ସେ ପାଟିକଲା । ହାତ ଗୋଡ଼ ଛାଟିଲା । ହଠାତ୍ ରାଜସିଂହାସନରୁ ତଳକୁ ଖସିପଡ଼ିବା କେଡ଼େ ଦୁଃଖଦାୟକ ସତେ !

ଆଲାଦ୍ଦୀନକୁ ନେଇ ରଜାଙ୍କ ଆଗରେ ଛିଡ଼ାକରାଗଲା । ରଜା ଆଉ ତାଙ୍କର ପ୍ରଧାନମନ୍ତ୍ରୀ ବସି ବିଚାର କରୁଥାନ୍ତି । ରଜାଙ୍କ ଆଖି ଆଲାଦ୍ଦୀନ ଉପରେ ପଡ଼ିଲା । ତାଙ୍କ ଆଖିରେ ନିଆଁ ଚହଟିଲା । ସେ ଗର୍ଜି ଉଠିଲେ – "ଏ ଅବିଶ୍ୱାସୀ ଠକକୁ ବନ୍ଦୀକର । ମୁଁ ଏହାର ମୁହଁ ଦେଖିବାକୁ ଚାହେଁନା । ପରେ ତା' ଅପରାଧର ବିଚାରକରିବି ।"

## କୁହୁକ ମୁଦି ବଳରେ ଆଲାଦ୍ଦୀନ ରଜାଝିଅକୁ ଠାବକଲା

ଆଲାଦ୍ଦୀନ ଅନେକ କଥା ଜାଣିନଥାଏ । ତା' ପ୍ରତି ଯେଉଁ ବ୍ୟବହାର କରାଗଲା, ତା'ର କାରଣ କ'ଣ ସେ ଜାଣିପାରିନଥାଏ । ସେ ରଜାଙ୍କୁ ପଚାରିଲା, "ହଜୁର, ମୋତେ କ୍ଷମାକରନ୍ତୁ ! ଆଉ କହନ୍ତୁ, ଆପଣ ମୋ' ଉପରେ ରାଗିଛନ୍ତି କାହିଁକି ? ମୋର ଅପରାଧ କ'ଣ ?"

ରଜା ତହୁଁ ଜେମା ଆଉ ଜେମାମହଲ ଅପହରଣ ହେବା କଥା କହିଲେ । କୋଠାଟା ଗଲା, ସେ କିଛି ନୁହେଁ, ତାଙ୍କ ଆଦରର ଜେମା କୁଆଡ଼େ ଗଲା ? ଏଇଥିପାଇଁ ସେ ଚିନ୍ତିତ । ଏଇଥିପାଇଁ ସେ ରାଗିଚ଼ନ୍ତି । ଆଉ ଏଇଥିପାଇଁ ଆଲାଦ୍ଦୀନ ଉପରେ ଦଣ୍ଡ ।

ଏହା ଶୁଣି ଆଲାଦ୍ଦୀନର ମନେହେଲା ସତେ ଯେପରି ସିଏ ଆକାଶରୁ ଖସିପଡୁଚି । କିନ୍ତୁ ସେ ବିପଦରେ ନିଜକୁ ସମ୍ଭାଳିନେଲା । ସେ କଥାଟାକୁ ଠଉରାଇ ନେଲା । ସେଇ ଶଇତାନ ଗୁଣିଆ ନିଶ୍ଚୟ ସବୁ କରିଚି । କୁହୁକ ଦୀପଟା ସେ ପାଇଲା କିମିତି ? ବହୁତ ଡରିଗଲା ଆଲାଦ୍ଦୀନ । କିନ୍ତୁ ତା' ଭିତରେ ଥିବା ମଣିଷଟା ସାହସ ହରାଇଲା ନାହିଁ । ସେ ଗୁଣିଆର ମୁକାବିଲା କରିବ । ସେ ରଜାଝିଅକୁ ନିଶ୍ଚୟ ଉଦ୍ଧାର କରି ଆଣିବ ।

ସେ ରଜାଙ୍କୁ କହିଲା, "ମୋତେ ଚାଳିଶଟି ଦିନ ସମୟ ଦିଅନ୍ତୁ, ହଜୁର! ମୁଁ ଯା'ରି ଭିତରେ ଜେମାଙ୍କୁ ନିଶ୍ଚେ ଫେରାଇ ଆଣିବି। ମତେ ବିଶ୍ୱାସ କରନ୍ତୁ, ମୁଁ ଜେମାଙ୍କୁ ନପାଇଲେ ଆପଣଙ୍କ ପାଖକୁ ଫେରିଆସିବି। ତା'ପରେ ମୋର ଆଉ ବଞ୍ଚିବା ଦରକାର ନାହିଁ। ମୋତେ ମୃତ୍ୟୁଦଣ୍ଡ ଦେବେ। କାରଣ ଜେମାଙ୍କୁ ଛାଡ଼ି ମୋ'ର ବଞ୍ଚିବା ଉଚିତ ନୁହେଁ।"

ରଜା କହିଲେ, "ହଉ, ତୁମକୁ ଚାଳିଶ ଦିନ ସମୟ ଦିଆଗଲା। ମନେରଖ, ପଳାଇଯିବାର ଚେଷ୍ଟା କରିବନି। ପଳାଇଗଲେ ଆମେ ଧରିଆଣିପାରିବୁ। ପୃଥିବୀର ଯେଉଁ କୋଣରେ ଲୁଚିଲେ ବି ତମର ରକ୍ଷା ନାଇଁ।"

ଆଲାଦ୍ଦୀନ ଖୁବ୍ ସାହସ ବାନ୍ଧିଲା। ରଜାଙ୍କୁ ପ୍ରଣାମ ଜଣାଇ ସିଏ ବାହାରିଲା। ଏବେ କୁଆଡ଼େ ଯିବ? କିଏ ତାକୁ ସାହା ହେବ? ସେ କ'ଣ କରିବ, ବୁଝିପାରୁନି। ଯୋଉ କୁହୁକ ଦୀପ ତା'ର ସବୁ, ସେ ଆଜି ନାହିଁ। ସେ ଦୀପ ଯାଇ ଗୁଣିଆ ହାତରେ। ସେ ଚିନ୍ତାରେ କାତର ହୋଇପଡ଼ିଲା। କାତର ହେଲେ ଚଳିବ ନାଇଁ। କାତରତା ଭୀରୁର ଲକ୍ଷଣ।

ସେ କ'ଣ କରିବ ବୋଲି ହାତଯୋଡ଼ି ବସି ଚିନ୍ତାକରୁଚି। ଅଧିକ ବ୍ୟସ୍ତ ହୋଇ ସେ ଦୁଇ ହାତକୁ ମକଚି ହେଲା। ଆଉ ସେଇ ମୁହୂର୍ତ୍ତରେ ସେ ଗୋଟାଏ ସ୍ୱର ଶୁଣିପାରିଲା, "କ'ଣ ଦରକାର ମାଲିକ?"

ଆଲାଦ୍ଦୀନ ଫେରି ଚାହିଁଲା। ଦେଖିଲା ଅସୁରଟିଏ ହସୁଚି। ସେ ପୁଣି କହିଲା, "ମାଲିକ, ମୁଁ ଆପଣଙ୍କର କି ସେବା କରିପାରିବି? ମୁଁ ପରା ସେଇ ମୁଦିର ଦୈତ୍ୟ। ମୋତେ ଚିହ୍ନିପାରୁନାହାନ୍ତି? ଏ ମୁଦି ଆପଣଙ୍କ ପାଖରେ ଥିବା ପର୍ଯ୍ୟନ୍ତ ମୁଁ ଆପଣଙ୍କର ସବୁ ସେବା କରିଚାଲିବି!"

ଅଙ୍ଗୁଳିରେ ଥିବା ସେଇ କୁହୁକ ମୁଦି କଥା ଏବେ ତାର

ମନେପଡ଼ିଲା । ଆଲାଦ୍ଦୀନ ଅନ୍ଧାରରେ ବାଟ ପାଇଲା । ସେ କହିଲା, "ହେ ବନ୍ଧୁ, ତମେ ଦିନେ ମୋର ଜୀବନ ରଖିଥିଲ । ଏଥର ବି ଜୀବନ ଯାଉଛି... ରକ୍ଷାକର ! କୁହ, ମୁଁ ଯେଉଁ ରତନମହଲ ତିଆରିକରିଥିଲି, ତାହା ଗଲା କୁଆଡ଼େ ? ତମେ ଜାଣ ସେଇଠି ଥିଲେ ଜେମା ! ମୋ' କୋଠାକୁ ମୋ ପାଖକୁ ଆଣିଦିଅ । ମୋ ଜେମାକୁ ଫେରାଇ ଆଣ ।"

ଅସୁର କହିଲା, "ତମ କଥା ଶୁଣିଲି । ତମ ଦୁଃଖରେ ମୁଁ ଦୁଃଖୀ । କିନ୍ତୁ ଏତେ ବଡ଼ କାମ ମୁଁ କରିପାରିବିନାହିଁ । କେବଳ କୁହୁକ ଦୀପର ଦୈତ୍ୟ ସେ ସବୁ କାମ କରିପାରିବ । ତେବେ, ଯେଉଁଠି ତୁମର ସେଇ ରତନମହଲ ଅଛି ମୁଁ ତୁମକୁ ନେଇ ସେଠି ପହଞ୍ଚାଇଦେବି ।"

ଆଲାଦ୍ଦୀନ ତା'ର ସବୁ ଦୁଃଖ ଭୁଲିଗଲା । ସେ କହିଲା– "ହେ ମୁଦିର ଦୈତ୍ୟ, ତୁମକୁ ଆଦେଶ ଦେଉଛି, ଯେଉଁଠି ମୋ ରତନମହଲ ଅଛି ସେଇଠିକି ମୋତେ ନେଇଯାଅ !"

ଦୈତ୍ୟ ଆଲାଦ୍ଦୀନକୁ ତା'ର ପିଠିରେ ବସାଇଲା ଓ ସୁଉ... ସୁଉ କରି ଶୂନ୍ୟରେ ଉଡ଼ିଚାଲିଲା । ଆଉ ରତନମହଲ ପାଖରେ ପହଞ୍ଚାଇ ଦେଇ ଆଲାଦ୍ଦୀନକୁ ସଲାମ କରି ସେ ମେଲାଣି ମାଗିଲା ।

## ଆଲାଦ୍ଦୀନ ବୁଦ୍ଧିରେ ଗୁଣିଆକୁ ଟପିଗଲା

ଆଲାଦ୍ଦୀନ ଯେଉଁଠି ଠିଆହୋଇଥିଲା, ତା' ଉପରକୁ ଥାଏ ଝରକାଟିଏ । ସେଇ ଝରକାଟି ରଜାଝିଅ ଶୋଇବା ଘରର ଝରକା । ଆଲାଦ୍ଦୀନ ଜାଣିଥିଲା, ରଜାଝିଅ ସେଇଠି ଠିଆହୋଇ ନିତିଦିନ ବାହାରକୁ ଦେଖିଥାଏ । ସେଇ ଝରକା ତଳେ ଠିଆହେଲେ ସେ ରଜାଝିଅର ଆଖିରେ ପଡ଼ିବ ।

ସେ ରତନମହଲର ସବୁ ଜିନିଷକୁ ଚିହ୍ନିଥିଲା । ଏଇ ତା'ର

ପ୍ରିୟ ଘର। କେତେ ସୁଖ ଦୁଃଖ ହସ ଖୁସିର ସାକ୍ଷୀ ଇଏ! ଆଜି ସେ କୋଠାର ମାଲିକ ଆଉ ଜଣେ। ପୁଣି ସେ ଜଣକ ତା' ଜୀବନର ବଇରି। ତା' ମନରେ ଦୁଃଖ ଭରିଗଲା। ଆଉ ସଙ୍ଗେ ସଙ୍ଗେ ଲଢ଼େଇ କରିବାର ଇଛା ବି ତା'ର ମନରେ ବଢ଼ି ଉଠିଲା। ନା, ନା, ଏ ଘରକୁ ସେ ଉଦ୍ଧାର କରିବ। ଉଦ୍ଧାର କରିବ ତା'ର ପ୍ରିୟ ରାଜଜେମାକୁ। ସେଥିପାଇଁ ସେ ଦଉଡ଼ିଆସିଚି ଦୂର ଚାଇନା ଦେଶରୁ ଏ ଆଫ୍ରିକାକୁ।

ରାତି ହୋଇଯାଉଚି। ଅନ୍ଧାର ମାଡ଼ି ଆସୁଚି। ଚାରିଆଡ଼େ କିଛି ଦିଶୁନି। ଏବେ ଆଉ କିଛି କରିବାର ଉପାୟ ନାହିଁ। ତାକୁ ଅପେକ୍ଷା କରିବାକୁ ପଡ଼ିବ। କୋଉଠି ଅଛି ସେଇ ଦୁଷ୍ଟ ଶଇତାନ ଗୁଣିଆ? ହୁଏତ ଥିବ କୋଠାଘର ଭିତରେ। ତା'ରି ଶେଯରେ ସେ ଶୋଇଥିବ।

ଏ ଦେଶଟା ତା'ହେଲେ ଆଫ୍ରିକା! ସିଏ ଆଫ୍ରିକା ଦେଖିନି। ଏବେ ରଜାଝିଅକୁ ସେ କିପରି ଦେଖିବ! କିପରି ସେ ତାକୁ ଫେରିପାଇବ! ଇଏ ଗୋଟେ ଅଜଣା ଅଶୁଣା ମୁଲକ। ଏଠି ତା' କଥା କିଏ ବୁଝିବ? ତା'ଛଡ଼ା ସେ ବଦ୍‌ମାସ ଗୁଣିଆ ତ ଜାଲ ପାତି ବସିଥିବ। ତା' ସଙ୍ଗେ ଇମିତି ହୁଣ୍ଡାଭାବରେ ଲଢ଼ିବା ବି ଠିକ୍ ହେବନି – ଓଲଟା ପ୍ରାଣଯିବ।

ଆଲାଦ୍ଦୀନ ମୁଣ୍ଡରେ ଚିନ୍ତାର ଅଡୁଆତଡୁଆ ସୂତା। କ'ଣ କରିବ ସେ ଠିକ୍ କରିପାରୁନି। ସେ ଯେତିକି ଭାବୁଥାଏ, ସେତିକି ଅଡୁଆ ଭିତରେ ପଶୁଥାଏ। ଶେଷକୁ ଠିକ୍ କଲା – ବୁଝି ବିଚାରି କର୍ମ କଲେ, ପ୍ରମାଦ ନ ପଡ଼ଇ ଭଲେ।

ସେଇ ଜାଗାରେ ଆଲାଦ୍ଦୀନ ବସିଥାଏ, ଆଉ ନାନା କଥା ଭାବୁଥାଏ। ଏମିତି ବସି ଭାବୁ ଭାବୁ ବିଚ଼ରା ସେଇ ଜାଗାରେ ଶୋଇଗଲା। ସେ ଭାବିପାରିଲାନି... ସେ ଶୋଇଚି କୋଉଠି। ସକାଳ ଆସିଲା। ତା'ର ନିଦ ବଡ଼ିସକାଳୁ ଭାଙ୍ଗିଗଲା। ସେ

ଚାରିଆଡ଼କୁ ଅନାଇଲା । ରାତି ଜାଗୁଲୁଜାଗୁଲୁ ହେଉଚି । ନାନା ଜାତିର ଚଢ଼େଇ ଚେଁ ଚାଁ କରି ବୋବେଇଲେଣି । ଝରକା ତଳେ ଗଛଟିଏ । ସେଇ ଗଛ ଆଡ଼କୁ ସେ ଗଲା । ସେଇଠି ଠିଆହେଲା ।



ଆଉ ରତନମହଲ ଭିତରେ ଜେମା ଉଠିପଡ଼ିଲେ । ତାଙ୍କ ମନ ଆଜି କାହିଁକି ଉଚ୍ଚାଟ ହେଉଚି । କ'ଣ ଜିନିଷ ଘଟିବାକୁ ଯାଉଚି । ସେ ଖୋଲିଲେ ତାଙ୍କର ପ୍ରିୟ ଝରକା । ଆଖି ତାଙ୍କର ବୁଲିଗଲା କାହିଁ କେତେ ଦୂର ଯାଏ । ଅଜଣା ଏ ଦେଶ । ଏ ଅଜବ ଦେଶରେ ତାଙ୍କର ନିଜର ବୋଲି କେହି ନାହିଁ । ଆଉ ତାଙ୍କର ପ୍ରିୟ ଜନମମାଟି— କାହିଁ କେତେ ଦୂରରେ ସେ ଦେଶ । ସେ ଦେଶ ପରି ସୁନ୍ଦର ଦେଶ ଆଉ କୋଉଠି ନାହିଁ । ସତେ କ'ଣ ସେ ଜନମଭୂଇଁର କୋଳକୁ ଫେରିଯାଇପାରିବ ? ସତେ କ'ଣ ତା'ର ବାପାଙ୍କୁ ଦେଖିପାରିବ ? ସତେ କ'ଣ ସେ ଆଲାଦ୍ଦୀନକୁ ପୁଣି ଫେରିପାଇବ ?

ଜେମାଙ୍କ ଆଖିରେ ଲୁହ ଜକେଇଗଲା । ସେ ଆଖି ଦୁଇଟାକୁ ଦୂର ଦିଗ୍‌ବଳୟ ଆଡୁ ଧୀରେ ଧୀରେ ଫେରାଇ ଆଣିଲେ । ଆଉ ସେହି ଗଛ ମୂଳରେ ତାଙ୍କର ଆଖି ଦୁଇଟି ଅଟକି ରହିଗଲା । କିଏ ଇଏ ? କାହାର ଏ ମୂର୍ତ୍ତି ? କିଏ ସେ ଅନେଇଁ ରହିଚି ତାଙ୍କରି ଆଡ଼କୁ ? ରଜାଝିଅ ଆଖିକୁ ବିଶ୍ୱାସ କରିପାରିଲାନି । ସେ ଲୁହ ପୋଛିଲା । ଆଗକୁ ଝୁଙ୍କିପଡ଼ି ନିରେଖି ଚାହିଁଲା । ଓଃ ! ଏ ତ ସେଇ – ତା'ରି ସ୍ୱାମୀ । ଆଲାଦ୍ଦୀନ ! ଏତେ ଦୂରରୁ ଏ ଦେଶକୁ ଆସିଲେ କିପରି ? ଆଲାଦ୍ଦୀନ ଠାରିଲା – ସେ ଏବେ ଖୁବ୍ ନିକଟରେ – ତା'ରି ପାଖରେ । ଜେମା ବୁଝିପାରିଲେ । ଜେମା ଜଣେ ବିଶ୍ୱାସୀ ଦାସୀକି ପଠେଇଲେ । ଗୋଟାଏ ଚୋରାବାଟରେ ସେ ଆଲାଦ୍ଦୀନକୁ ନେଇଆସିଲେ ରତନମହଲକୁ ।

## ଆଲାଦ୍ଦୀନର କୌଶଳରେ ଗୁଣିଆ ମଲା

କେତେ ଦିନ ପରେ ଦେଖା । ଉଭୟଙ୍କ ମନ ଆନନ୍ଦରେ ପୂରିଉଠିଲା । ରଜାଝିଅ ଆଲାଦ୍ଦୀନକୁ ଭିଡ଼ିଧରିଲା । କାନ୍ଦି କାନ୍ଦି କହିଲା, "ସତେ ତମେ ଆସିଚ ? କୁଆଡ଼େ ଥିଲ ଏତେ ଦିନ ଯାଏଁ ? ଏ ଗୋଟାଏ ଯମପୁରୀ । ଏଠୁ ମୋତେ ନେଇଚାଲ । ଏଠି ମୁଁ ଆଉ ଟିକିଏ ସମୟ ବି ରହିପାରିବିନି ।"

ତା'ପରେ ଗୁଣିଆ କିପରି ଦୀପ ବିକିବାକୁ ଆସିଥିଲା, ଆଉ କିପରି ଅନେକ ଅଦ୍ଭୁତ କଥା ଆପେ ଆପେ ଘଟିଗଲା – ସବୁ ସେ କାନ୍ଦି କାନ୍ଦି କହିଗଲା । ଆଉ କହିଲା, "ଏ ବୁଢ଼ା ଗୁଣିଆଟା ପଶୁଟାଏ । ତା'ଠି ଦୟା ମାୟା କିଛି ନାହିଁ । ସେ ତାକୁ ନାନା ଭାବରେ ଭୁଲାଇବାକୁ ଚେଷ୍ଟା କରିଛି । ସେ ପୁଣି କହୁଥିଲା, ରଜା କାଳେ ଆଲାଦ୍ଦୀନର ମୁଣ୍ଡକାଟ କରିଦେଲେ । ତେଣୁ ରଜାଝିଅ ତାକୁ ଭୁଲିଯିବା ଉଚିତ । ହେଲେ, ଗୁଣିଆବୁଢ଼ା ବଡ଼ ଚାଲାକ ।

ସେ କୁହୁକ ଦୀପଟାକୁ ସବୁବେଳେ ନିଜ ସାଙ୍ଗରେ ନେଇଯାଉଚି ।''

ଏ ସବୁ କଥା ଶୁଣି ଆଲାଦ୍ଦୀନ ରାଗରେ ପାଚିଗଲା । ସେ ନିଜ ବୋକାମୀ ପାଇଁ ବି ନିଜକୁ ଅନେକ ନିନ୍ଦିଲା । ଭାବିଲା – ଶିକାରକୁ ଗଲାବେଳେ ସେ ସାଙ୍ଗରେ ଦୀପଟିକି ହେଲେ ନେଇକରି ଯାଇଥାନ୍ତା ? ତା'ହେଲେ ଏ ବିପଦ ଘଟିନଥାନ୍ତା । ମନେ ମନେ କେତେ ଅନୁତାପ କଲା ।

ସେ ରଜାଝିଅକୁ ବୁଝାଇଲା – ''ହଉ, ଏବେ ଧୈର୍ଯ୍ୟଧର । ଏ ରତନମହଲରେ ମୁଁ ଅନେକ ସମୟ ରହିଲିଣି । ଏଠି ଆଉ ଅଧିକ ସମୟ ରହିଲେ ବିପଦ ଆସିପାରେ । ମୁଁ ଏବେ ବାହାରକୁ ଯାଏ । କ'ଣ କରାଯିବ ଏ ଭିତରେ ମୁଁ ଠିକ୍ କରିନେବି ।''

ଆଲାଦ୍ଦୀନ ମହଲ ଭିତରୁ ବାହାରିଆସିଲା । ବଜାରକୁ ଗଲା । ସେ ବଜାରରୁ କେତେକ ଜିନିଷ କିଣାକିଣି କଲା । ସେ କିଣିଲା ମଧ କିଛି ଉତ୍କଟ ବିଷ । ତା'ପରେ ସେ ଫେରିଆସିଲା ରଜାଝିଅ ପାଖକୁ । ତାକୁ କହିଲା, ''ଦେଖ, ଏଥର କାମର ପାଳି – ତୁମର ପାଳି । ଯମ ସଙ୍ଗେ ମୁହାଁମୁହିଁ ଲଢ଼େଇର ପାଳି । ହେଲେ ତ ଏପାର ନହେଲେ ସେପାର । ତମକୁ ବାହାହେବାକୁ ସେ ବଦମାସ୍ କହୁଚି ପରା – ତମେ ରାଜିହେଇଯାଉନ !''

ରଜାଝିଅ ଚମକିପଡ଼ିଲା । ଏ କ'ଣ କହୁଚି ଆଲାଦ୍ଦୀନ ! କ'ଣ ଏଇଥିପାଇଁ ସେ ଏତେକାଳ ତା'ର ବାଟ ଚାହିଁ ରହିଚି ? ନା, ତା' ହୋଇପାରିବନି । ସେ ଏ ପାପୀ ବୁଢ଼ାକୁ ବାହାହୋଇପାରିବନି । ରଜାଝିଅ କାନ୍ଦିପକାଇଲା ।

ଆଲାଦ୍ଦୀନ ବୋଧଦେଇ କହିଲା – ''ନାଇଁ ହୋ, ତମେ କ'ଣ ସତରେ ତାକୁ ବାହାହେବ ? ତମେ ମିଛିମିଛିକା ସେ ଅଭିନୟ କରିବ । ନିଜକୁ ଭଲ ଭାବେ ସଜାଇବ । ଭଲ ଶାଢ଼ି ପିନ୍ଧିବ । ଭଲ ଅଲଙ୍କାର ପତ୍ର ଲଗାଇ ଚକ୍‌ଚକ୍ ଦିଶିବ । ଶଇତାନକୁ କହିବ ଯେ ତା' କଥାରେ ତମର ବିଶ୍ୱାସ ଆସିଚି । ଆଲାଦ୍ଦୀନ

ମଲା କି ଗଲା... ତା' ପାଇଁ ତମେ ଆଉ ଚାହିଁ ବସିବ କିଆଁ ? ଗୁଣିଆକୁ ବାହାହେବା ଛଡ଼ା ତମର ଯେପରି ଆଉ ଅଲଗା ବାଟ ନାହିଁ। ଏମିତି କରି ତାକୁ ଖୁସିକରାଇବ। ମଦ ପିଆଇବ। ଆଉ ନିଅ... ନିଅ ଏଇ ବିଷ। ବେଳ ଉଣ୍ଡି ମଦର ପିଆଲାରେ ମିଶାଇଦେବ। ଗୁଣିଆ ସେ ମଦ ପିଇବ– ଆଉ ସେଇ ହେବ ତା'ର ଶେଷ ପିଇବା। ତା'ପରେ ମୋତେ ଡାକିବ। ବାକି କାମ ମୁଁ କରିନେବି।''

ରଜାଝିଅ ନାରାଜ ହେଉଥିଲା। ମିଛରେ ବି ସେ ସଇତାନ ଗୁଣିଆକୁ ଭଲପାଇବା ଅଭିନୟ କରିବାକୁ ରାଜିହେଉନଥିଲା। ଶେଷକୁ ରାଜିହେଲା।

ସବୁଦିନ ପରି ସେଦିନ ବି ଗୁଣିଆ ଆସିଲା। ବହୁତ ଗୁଡ଼େ ମଦ ପିଇ ଚେତା ନଥିଲା ଭଳି ହୋଇଯାଇଚି। ରଜାଝିଅ ତା' ଆଗରୁ ଶାଢ଼ି ଓ ଅଳଙ୍କାର ପିନ୍ଧି ଦେହକୁ ସଜେଇ ବସିଚି। ଦିଶୁଚି ସରଗପରୀଟିଏ ପରି। ଗୁଣିଆକୁ ଦେଖି ନାନାପ୍ରକାର ମିଠା ଖାନା ପରଷି ଦେଲା। ଗୁଣିଆ ପେଟ ଭରି ଖାଇଲା। ଏଣେ ମଦ ନିଶା ଧରିଚି। ରଜାଝିଅ ହସିହସି ଗୁଣିଆକୁ କହିଲା, ''ତମ କଥାରେ ମୁଁ ରାଜି। ତମ କଥାରେ ମୋ'ର ବିଶ୍ୱାସ ହେଇଚି।''

ଗୁଣିଆ ରଜାଝିଅର ସେଦିନର ବେଶ ପୋଷାକ ଦେଖିଲା। ତା' ହସ ହସ ମୁହଁକୁ ଦେଖି ସେ ଅନେକ କଥା ଠଉର କରିନେଲା। ତା' ମନ ଆନନ୍ଦରେ ଅଧୀର ହେଲା। ବୁଢ଼ା ଥେଇ ଥେଇ ନାଚିଲା। ତା' ଘାଘଡ଼ା ଗଳାରେ ଅବୁଝା ଭାଷାରେ ଗୀତ ଗାଇଲା। ତା' ମୁଣ୍ଡରେ ନିଶା ଉଠିଚି। ରଜାଝିଅ ତା' ଖେଳ ଆରମ୍ଭ କରିଦେଲା। ପିଆଲା ପିଆଲା ମଦ ବଢ଼ାଇଦେଉଚି। ବେଳେ ବେଳେ ଗୁଣୁଗୁଣୁ କରି ଗୀତ ଗାଉଚି। ଝୁମୁଝୁମୁ ନାଚୁଚି ବି। ଆଉ ଥରକୁ ଥର ପିଆଲାରେ ମଦ ଭରି ଟେକିଦେଉଚି–

''ପିଅ ... ପିଅ ... ମଦ ପିଅ ! ଆମର ଏ ଖୁସିର ଦିନ ! ତାକୁ ତମେ ଖୁସିରେ ପାଳିବ ନାହିଁ ?''



ସେ ମଦ ପିଆଲା ଥରକୁ ଥର ଟେକିଦେଉଚି । ଗୁଣିଆ ଖୁସିରେ ଗୋଟାଏ ଢୋକରେ ପିଆଲାଏ ମଦ ଠେସୁଚି । ''ଦିଅ ... ଦିଅ ! ଆହୁରି ଦିଅ ...''

ହଠାତ୍ ସେ କୋଉ ପିଆଲାଏ ମଦ ପିଇଦେଇଚି – ତା'ମୁଣ୍ଡ ଚକ୍‌କର ଖାଇଚି । ଗୁଣିଆ ଗଁ ଗଁ କରୁଚି । ସେ ମଦର ନିଶା ବୋଲି ଭାବିନେଇଚି । ମାତ୍ର ରଜାଝିଅ ଠିକ୍ ଜାଣେ – ଆଲାଦ୍ଦୀନ ଦେଇଥିବା ବିଷର ଏ କରାମତି । ଗୁଣିଆ ଘିର୍‌ଘିର୍ ବୁଲିଲା ଓ ତା'ପରେ ଧଡ଼ାସ୍ କରି ପଡ଼ିଗଲା । ଚଟାଣରେ ମୁଣ୍ଡ ପିଟିହେଲା । ସେ ଏକ ବିକଟାଳ ରଡ଼ି ଛାଡ଼ିଲା – ''ରଜାଝିଅ ! ରଜାଝିଅ !! ବିଶ୍ୱାସଘାତକିନୀ ! ହାୟ ... ହାୟ ... ମୋ ଦୀପ ! ମୋ' କୁହୁକ ଦୀପ !!'' କିନ୍ତୁ ସେତେବେଳକୁ ଅନେକ ଡେରି

ହୋଇଯାଇଥାଏ ।

ଧୀରେ ଧୀରେ ତା' ଗଳା ପଡ଼ିଗଲା । ସେ ଗଳାରୁ ଆଉ କିଛି ଶୁଭିଲାନି । ତା' ଆଖି ଡ଼ିମା ଡ଼ିମା ହୋଇ ବାହାରିପଡ଼ିଲା । ବୁଢ଼ାର ହାଡୁଆ ଦିହଟା ଉପରେ ଗୋଟାଏ ନୀଳ ରଙ୍ଗ ମାଡ଼ିଆସୁଥାଏ । ତା'ପାଟିରୁ ଗରଳ ବାହାରୁଥାଏ । ଗୁଣିଆ ମଲା । କଣ୍ଟା ଗଲା ।

## ଆଲାଦ୍ଦୀନ ରଜାଝିଅ ଓ ତା' ନଅର ଫେରିପାଇଲା

ରଜାଝିଅ ସଙ୍ଗେ ସଙ୍ଗେ ଆଲାଦ୍ଦୀନକୁ ଡକାଇଆଣିଲା । ଆଲାଦ୍ଦୀନ ତେବେ ବି ଡରୁଚି । ସେ ଲୁଚି ଲୁଚି ଦେଖିଲା, ତା'ର ଶତ୍ରୁ ମରିପଡ଼ିଚି । ବେଶ୍‌, ଆଉ ଡରିବାର କାରଣ ନାହିଁ । ଗୁଣିଆ କୁହୁକ ଦୀପଟାକୁ ଅଣ୍ଟାରେ ବାନ୍ଧି ରଖିଥାଏ । ଆଲାଦ୍ଦୀନ ତା' ଦିହସାରା ଉଣ୍ଡାଳିଲା । ଶେଷରେ ଦୀପଟାକୁ ପାଇଲା । ସଙ୍ଗେ ସଙ୍ଗେ ଦୀପକୁ ଘଷିଲା । ଆଗରେ ଉଭାହେଲା ଦୀପର ଅସୁର । କହିଲା – "ଆପଣଙ୍କ ଦାସ, ମାଲିକ ! ଆଦେଶ କରନ୍ତୁ !"

ଆଲାଦ୍ଦୀନ କହିଲା – "ଦେଖ . . . ଏ ରତନମହଲକୁ ଯୋଉଁଠୁ ଆଣିଥିଲ ସେଇଠାକୁ ନେଇଚାଲ । ମୋ କଥାର ଅନ୍ୟଥା ଯେପରି ନହୁଏ ।"

ସେ ଦୈତ୍ୟ ମୁଣ୍ଡ ନୁଆଁଇଲା । ଆଦେଶ ଗ୍ରହଣ କଲା । ଆଖିର ପଲକରେ ଶୂନ୍ୟେ ଶୂନ୍ୟେ ଉଡ଼ିଲା ରତନମହଲ । ଯାଉଚି ଚୀନ ! ଚୀନର ଲୋକେ ରତନମହଲଟା ଉଡ଼ି ଉଡ଼ି ଆସୁଥିବା ଦେଖି ଆଶ୍ଚର୍ଯ୍ୟ ହେଲେ । ତା' ସହ ଖୁସିରେ ଡେଇଁ କୁଦି ମହଲ ପାଖେ ଜମାହେଲେ ।

ବାହାରେ ପାଟିଗୋଳ ଶୁଣି ରଜା ଝରକା ଖୋଲି ବାହାରକୁ ଅନାଇଲେ । ଆଉ କ'ଣ ଦେଖୁଚନ୍ତି ସେ ! ରତନମହଲ ସେଇପରି

ଠିଆହୋଇଚି । ରଜା ଝିଅକୁ ଦେଖିବାକୁ ଚାଲିଲେ । କୋଠରି ପରେ କୋଠରି ସେ ଧାଇଁ ଧାଇଁ ପାରହେଉଥାନ୍ତି । ଝିଅକୁ ଦେଖିବାକୁ ସେ ପାଗଳ ହେଇଯାଇଥାନ୍ତି । ଏ ମହଲଟା ଯାଇଥିଲା କିପରି ଓ କୁଆଡ଼େ ? ପୁଣି ଆସିଲା ବା କିପରି ? ତାଙ୍କୁ କିଛି ଜଣାପଡୁନଥାଏ ।

ଆଲାଦ୍ଦୀନ ଶୁଣିଲା ରଜା ଆସୁଛନ୍ତି । ସେ ଆସନ ଛାଡ଼ି ତାଙ୍କ ଆଡ଼କୁ ଧାଇଁଗଲା । ମୁଣ୍ଡ ନୁଆଇଁ ରାଜକୀୟ କାଇଦାରେ ପ୍ରଣାମ କଲା । କହିଲା – "ମୋ କଥା ମୁଁ ରଖିଚି । ଆସନ୍ତୁ, ଆପଣଙ୍କ ଝିଅକୁ ଦେଖିଯାଆନ୍ତୁ ।" ରଜାଝିଅ ଯୋଉଠି ଥିଲା ସେ ରଜାଙ୍କୁ ସେଇଠାକୁ ବାଟକଢ଼ାଇନେଲା ।

ରଜାଙ୍କ ଖୁସିର ସୀମା ରହିଲାନି । ସାରା ଦେଶରେ ଆନନ୍ଦ ଉତ୍ସବ ଲାଗିଗଲା । ଲୋକେ ଗୀତ ନାଚ କଲେ । ଭୋଜି ଭାତରେ ମଜା ଉଡ଼ାଇଲେ । ଦିନ ଦିନ ଧରି ଲୋକଙ୍କ ମେଳା ଚାଲିଲା ।

ଆଉ କିଛି ଦିନ ପରେ – ରଜାଙ୍କ ମନ ବଦଳିଲା । ତାଙ୍କର ପୁଅପାଠିନଥିଲା – ସେଇ ଗୋଟିଏ ବୋଲି ଝିଅ । ଏବେ ସେ ଝିଅ – ସେ ପୁଅ । ରଜା ତାକୁ ସିଂହାସନ ସମର୍ପି ଦେଲେ । ଆଲାଦ୍ଦୀନ ରଜାଝିଅକୁ ଶାସନ କାମରେ ସାହାଯ୍ୟ କଲା । ଦେଶ ସୁରୁଖୁରୁରେ ଚାଲିଲା । ରାଇଜର ଲୋକେ ଖୁବ୍ ଖୁସିରେ ରହିଲେ । କୋଉଠି କେହି ଦୁଃଖୀ ରଙ୍କୀ ରହିଲେନି ।

କିନ୍ତୁ କୁହୁକ ଦୀପର କ'ଣ ହେଲା ?

ଆଲାଦ୍ଦୀନ ସେ ଦୀପକୁ ଗଭୀର ସମୁଦ୍ରରେ ଫିଙ୍ଗିଦେଲା । ଆଉ ସେ କୁହୁକ ଦୀପରେ କି କାମ ?

□ □ □

# ସ୍କୁଲ ଛାତ୍ରଛାତ୍ରୀଙ୍କର ଅତି ପ୍ରିୟ ବହିବିଶ୍ୱସାହିତ୍ୟ ଗ୍ରନ୍ଥମାଳା

| | |
|---|---|
| ଅଲିଭର ଟୁଇଷ୍ଟ | ପାପ ଓ ପ୍ରାୟଶ୍ଚିତ୍ତ |
| ଦୁଇଟି ନଗରୀର କାହାଣୀ | ବିପନ୍ନ ନାବିକର କାହାଣୀ |
| ଡେଭିଡ୍ କପରଫିଲଡ୍ | ରାଜା ଆର୍ଥରଙ୍କ ଯୋଦ୍ଧାଗଣ |
| ଅନେକ ଆଶା | ଆନନ୍ଦ ମଠ |
| ନିକୋଲାସ୍ ନିକଲବି | ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ |
| ବିପ୍ଳବକାରୀ | ଶକୁନ୍ତଳା |
| କୋଡ଼ିଏବର୍ଷ ପରେ | ସେକସ୍‌ପିଅର କାହାଣୀ ୧ମ, ୨ୟ, ୩ୟ |
| ମଣ୍ଟିକ୍ରିଷ୍ଟୋର ରାଜା | ପିଲାଙ୍କ କଥାସରିତ ସାଗର |
| କର୍ସିକାନ୍ ଦୁଇଭାଇ | ଟଲଷ୍ଟୟ କାହାଣୀ · ୧ମ, ୨ୟ, ୩ୟ |
| ବିଚିତ୍ର ତାବିଜ | ହୋମର୍ କାହାଣୀ |
| ମଣ୍ଟରୋଜର ଉପକଥା | ଆଣ୍ଡରସନ୍‌ଙ୍କ କାହାଣୀ |
| ରାଜା ସଲୋମନଙ୍କ ହୀରାଖଣି | ଗର୍କୀ କାହାଣୀ : ୧ମ, ୨ୟ |
| ଟମ ସଏର୍ | ଫକୀରମୋହନଙ୍କ କାହାଣୀ : ୧ମ, ୨ୟ |
| ହକଲବେରୀ ଫିନ୍‌ର କାହାଣୀ | ମୋପାସାଁ କାହାଣୀ: ୧ମ, ୨ୟ, ୩ୟ, ୪ର୍ଥ |
| ରାଜପୁତ୍ର ଓ ଭିକାରୀ | ପ୍ରେମଚନ୍ଦ କାହାଣୀ: ୧ମ, ୨ୟ, ୩ୟ, ୪ର୍ଥ |
| ପମ୍ପେଇନଗରୀର ଶେଷଦିନ | ଆରବଦେଶର କାହାଣୀ |
| ଅଶୀଦିନରେ ପୃଥିବୀ ପରିକ୍ରମଣ | ସିନ୍ଦବାଦ କାହାଣୀ |
| ହେଞ୍ଜୁର ରୁପର୍ଟ | ଆଲାଦ୍ଦୀନର କୁହୁକଦୀପ |
| ଜେଣ୍ଡାଦୁର୍ଗର ବନ୍ଦୀ | ମହାକବି କାଳିଦାସ କାହାଣୀ ୧ମ, ୨ୟ |
| ସୁଇସ୍ ରବିନ୍‌ସନ୍ | ପିଲାଙ୍କ ଛ'ମାଣ ଆଠଗୁଣ୍ଠ |
| ରତ୍ନଦ୍ୱୀପ | ଗ୍ରୀମ୍‌ସଙ୍କ କାହାଣୀ · ୧ମ, ୨ୟ |
| ଭୌତିକ ବୋତଲ | ବୀରବଲ କାହାଣୀ |
| ପ୍ରବାଳଦ୍ୱୀପ | ରିପଭାନ୍ ଉଇଙ୍କଲ |
| ଅଦୃଶ୍ୟମାନବ | ଦୁଃଖ ପରେ ସୁଖ |
| ଟାଇମ୍ ମେସିନ୍ | ଜାତକ କାହାଣୀ : ୧ମ, ୨ୟ, ୩ୟ, ୪ର୍ଥ |
| ଚନ୍ଦ୍ରପୃଷ୍ଠରେ ପ୍ରଥମମାନବ | ବେତାଳ କାହାଣୀ : ୧ମ, ୨ୟ |
| ଗଲିଭରର ଭ୍ରମଣକାହାଣୀ | ବାଇବେଲ କାହାଣୀ · ୧ମ, ୨ୟ |
| ସାଇଲାସ୍ ମାରନର୍ | ରାମାୟଣ କାହାଣୀ |
| ରବିନ୍‌ସନ୍ କ୍ରୁଶୋ | ମହାଭାରତ କାହାଣୀ |
| ରବିନ୍ ହୁଡ୍ | ଈଶପ କାହାଣୀ |
| ଟମକକାଙ୍କ କେବିନ | ଗ୍ରୀସ୍‌ଦେଶର ପୁରାଣ କାହାଣୀ |
| ମୂର୍ତ୍ତି ଓ ଗୋଲାପ | ରୋମରାଜ୍ୟର ପୁରାଣକାହାଣୀ |
| ଚନ୍ଦ୍ରକାନ୍ତମଣି | ଆଲିବାବା କାହାଣୀ |
| ସେରଲକ୍ ହୋମସ୍ କାହାଣୀ | ବିଚିତ୍ର ଦେଶରେ ଏଲିସ |
| ଦେବମାନବ ହରକ୍ୟୁଲିସ୍ | ରୁସ୍ତମ କାହାଣୀ |
| ଭୌତିକ କୁକୁର | କୃଷ୍ଣସୁନ୍ଦର |

ଏହା ଛଡ଼ା ଆହୁରି ଅନେକ ଭଲ ବହି ଯାହା ସବୁ ଦେଶର ପାଠକଙ୍କୁ ସବୁବେଳେ ମୁଗ୍ଧ କରିଛି ।

ପ୍ରକାଶକ — ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨